

ଶ୍ରେଷ୍ଠ ରଚନା ନିମିତ୍ତ ପୁରସ୍କୃତ ନାଟକ,
ନିଖିଳ ଭାରତ ନାଟକ ପ୍ରତିଯୋଗିତା : ୧୯୭୮

# ଆତ୍ମଲିପି

ନାଟ୍ୟକାର
ଶ୍ରୀ ରମେଶ ପ୍ରସାଦ ପାଣିଗ୍ରାହୀ

ଓଡ଼ିଶା ବୁକ ଷ୍ଟୋର

ଆତ୍ମଲିପି

ନାଟ୍ୟକାର :

ଶ୍ରୀ ରମେଶ ପ୍ରସାଦ ପାଣିଗ୍ରାହୀ

ପ୍ରକାଶକ :

ଶ୍ରୀ ଗୋବିନ୍ଦଚରଣ ପାତ୍ର

ଓଡ଼ିଶା ବୁକ୍ ଷ୍ଟୋର

ବିନୋଦ ବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ଦଶହରା, ୧୯୭୮

ମୁଦ୍ରଣ : ଶ୍ରୀ ପ୍ରିଣ୍ଟର୍ସ, ପୁରୀ

ମୂଲ୍ୟ : ପାଞ୍ଚ ଟଙ୍କା ମାତ୍ର
( ବନ୍ଧେଇ ଏକ ଟଙ୍କା )



ATMALIPI
by :

Ramesh Prasad Panigrahi

Published by :
Gobindcharan Patra

ORISSA BOOK STORE
Binod Bihari, Cuttack-753002

First Edition :
Dashahara, October 1978

Printed at :
Sri Printers, Puri

Price : Rupees Six only.

ତୋ' ଯନ୍ତ୍ରଣା, ଲୁହ ଓ ସହନଶୀଳତାର ସମୁଦ୍ର ଆଗରେ
'ଆତ୍ମଲିପି' କ୍ଷୁଦ୍ର ଶାମୁକାଟିଏ ଭଳି ।
ତଥାପି ଏହା ତୋର ଦାନ, ତୋର ପ୍ରେରଣା ।
ଜୀବନରେ କେବେ ଏକୁଟିଆ ମୁହୂର୍ତ୍ତ ଆସିଲେ
ହୁଏତ 'ଆତ୍ମଲିପି' ହିଁ ମୋ କଥା ମନେ ପକେଇ ଦେବ ।
ତେଣୁ ତୋ' ହାତରେ.........

# ॥ ଆତ୍ମଲିପି ॥

'ଆତ୍ମଲିପି' ନାଟକର ନାଟକ । ଏଥିରେ ନାଟକ ସଂପର୍କରେ ଅନେକ ବ୍ୟକ୍ତିଗତ ଓ ନୈର୍ବ୍ୟକ୍ତିକ ଚିନ୍ତା ଓ ଦ୍ୱନ୍ଦ୍ୱର ଉଲ୍ଲେଖ ଅଛି । ତେଣୁ ଏହାର ଏକ ମୁଖବନ୍ଧ ନିହାତି ଆବଶ୍ୟକ ନୁହେଁ । ତଥାପି ଏଇ ଦୁଇବର୍ଷ ଭିତରେ 'ଆତ୍ମଲିପି' ଓଡ଼ିଶାର ଊଣେଶୋଟି ମଞ୍ଚରେ ଅଭିନୀତ ହୋଇ ଦର୍ଶକଙ୍କ ମନରେ ଉତ୍କଣ୍ଠା ପ୍ରତିକ୍ରିୟା ସୃଷ୍ଟି କରିଛି । କିନ୍ତୁ ଓଡ଼ିଶାରେ ନାଟ୍ୟ ସମାଲୋଚକ ନାହାନ୍ତି ଏବଂ ଯୋଉଁ ସମାଲୋଚକ ମାନେ ଲେଖୁଛନ୍ତି ସେମାନଙ୍କର ନାଟକ ଓ ତାର ପ୍ରଯୋଜନା ସଂପର୍କରେ ବହୁ ବିଭ୍ରାନ୍ତିକର ଚିନ୍ତା ରହିଛି । ଓଡ଼ିଶାର ନିର୍ଦ୍ଦେଶକ ଓ ଅଭିନେତା/ଅଭିନେତ୍ରୀ ମାନେ ପରଶ୍ରମକାତର । ବୁଦ୍ଧିର ଗଣ୍ଡାଘରେ ତାଲା ପକେଇ ଦେଇ କେତେ ସହଜରେ ନାଟକଟା କରି ଦିଆଯାଇ ପାରିବ ଅର୍ଥାତ୍ କେତେ ସହଜରେ ଟଙ୍କା ହବ ତାର ସାଧନା କରିବାରେ ବ୍ୟସ୍ତ । ତେଣୁ ଏପର୍ଯ୍ୟନ୍ତ ଆମେ ନାଟ୍ୟପ୍ରେମୀ ଦର୍ଶକମାନଙ୍କୁ ଏକ ନୂତନ ପର୍ଯ୍ୟାୟର ଆନନ୍ଦ, ମନୋରଞ୍ଜନ ବା କଳାତ୍ମକତା ଦେଇ ପାରିଲୁ ନାହିଁ । ଯାହା ଗୁଡ଼ିକ ଠିକ୍ ସାମାଜିକ ସମସ୍ୟା ଗୁଡ଼ିକୁ ନେଇ କିମ୍ବା ସହଜରେ ଜନା ସ୍ମାରକରେ ଅଭିନୀତ ହେଉଛି ତ୍ରୁବାଲ କୌଣସିମତେ ତିଷ୍ଠି ରହିଛି । ବ୍ୟବସାୟିକ ମଞ୍ଚରେ କେବଳ ଉତ୍ତେଜିଆ ଉପାୟ ଖୋଜି ଖୋଜି ବ୍ୟବସାୟ ମାନ୍ଦା । ଏଣୁ ଓଡ଼ିଆ ନାଟକ ବର୍ତ୍ତମାନ ସଂକଟରେ ଏକ ପତନମାନ ଗାଡ଼ିଆ ଭିତରେ ପଡ଼ିଛି । ଏଣେ ବୌଦ୍ଧିକତା ନାମରେ ଯାହା ବ୍ୟକ୍ତ କରାଯାଉଛି ତାହା ବାସ୍ତବରେ ବୌଦ୍ଧିକତାର ସ୍ୱେଚ୍ଛାଚାର ଏବଂ ସେହି ଗୁଡ଼ିକ ଓଡ଼ିଶାର ଦୁଇ ଚାରୋଟି ଅଧ୍ୟାପକ/ପ୍ରାଧ୍ୟାପକ ପୁସ୍ତକ ମ୍ୟାଗାଜିନରେ ଆଲୋଚିତ ହୋଇ ଗ୍ରନ୍ଥାଗାରରେ ଉଇ ମାନଙ୍କର ଖାଦ୍ୟ ହେବାପାଇଁ ରଖା ଯାଉଛି । ଯଦି ତଥାକଥିତ ବୌଦ୍ଧିକ ନାଟ୍ୟକାର ଙ୍କଠ ଲୁଟ୍ଟୁମ୍ବ କରି ଦୁଇ ଚାରିଜଣ ବୌଦ୍ଧିକ ସମାଲୋଚକଙ୍କୁ ଖୁଣ୍ଟେଇ ପାରୁଛି ତା'ର ପ୍ରସ୍ତୁତ ସୁଗନ୍ଧ ଓ ତାଙ୍କ ପାଇଁ ସରକାରୀ ପାଠ୍ୟକ୍ରମ ସୁରକ୍ଷିତ ରହିଛି ।

ଏଇ ଅବସ୍ଥାରେ ହଠାତ୍ ସିନେମା ଛତୁ ଫୁଟୁଛି । ସୁଡ଼ିଏ କଳା ଟଙ୍କା ଥିବା ଅକେଳାବାର ସହଜରେ ମଦ ଓ ନାରୀ ମିଳୁଥିବା ଏଇ ଫେସନବୁଲ୍ ବ୍ୟବସାୟ ଢଳ ଓଡ଼ିଆ ଅଭିନୟ, କଥାବସ୍ତୁ ଓ ନନ୍ଦନତତ୍ତ୍ୱକୁ ପଚିଶ ବର୍ଷ ପଛକୁ ଠେଲି ଦେଲେ । ଏଇ ସବୁ ସାଂସ୍କୃତିକ ଅବକ୍ଷୟ ଏବଂ ନିଜେ ବଡ଼ ବୋଲି ନିଜ ଢ଼ଣ୍ଡିମ ପିଟି ଅଜ୍ଞ ଜନତାଙ୍କୁ ଭ୍ରମାତ୍ମକ ରାସ୍ତାରେ ଟାଣି ନେଇ ଫାଇଦା ଉଠାଉଥିବା ସାଂସ୍କୃତିକ ଜୀବାଣୁ ମାନଙ୍କ ପରିବେଶରେ 'ଆତ୍ମଲିପି' ଲେଖା ହୋଇଛି ।

ମୁଁ ପୁରୀ ଆସିବା ପରେ 'ଆତ୍ମଲିପି'ରେ ମୋର ଅନୁଭୂତ ଘୁଡ଼ିକୁ ବର୍ଣ୍ଣନା କରିବା ପାଇଁ ଚେଷ୍ଟା କରିଛି, ଯେହେତୁ ମୋ' ଘର ଗଞ୍ଜାମ ଜିଲ୍ଲାରେ ଏବଂ ମୁଁ ଅନେକ ଦିନ ବଲାଙ୍ଗୀର ଓ କୋରାପୁଟ ଜିଲ୍ଲାରେ ଥିଲି; କଟକ, ପୁରୀ ଓ ଭୁବନେଶ୍ୱରର ପ୍ରତିଷ୍ଠିତ ସାଂସ୍କୃତିକ ଜୀବଜନ୍ତୁ ମାନେ ପ୍ରଥମେ ଏଇ ଅଞ୍ଚଳରେ ମତେ ଆବିଷ୍କାର କରି ଦାନ୍ତ ନିକୁଟିଲେ । ଏଗୁଡ଼ାକ କୁକୁର ପ୍ରକୃତି, ଅନ୍ୟ ସାହିରୁ/ଅନ୍ୟ ଅଞ୍ଚଳରୁ କୁକୁରଟିଏ ଆସିଲେ ଯେପରି ସେଇ ଅଞ୍ଚଳର କୁକୁରମାନେ ଭୁକନ୍ତି, ମତେ ଦେଖି ସେୟା କଲେ ଏଇଠିକାର ସାହିତ୍ୟରଥୀମାନେ । ଜୟପୁରରେ ମଧ୍ୟ ଏଇ ଅଞ୍ଚଳର ଲୋକେ ମୋ' ନାଁରେ ଭିଜିଲାନ୍ସରେ ମିଛ ଖବର ଦେଲେ ଯେ ମୁଁ ଜଣେ ନକ୍ସାଲାଇଟ୍ ଏବଂ ଆଞ୍ଚଳିକତା ପ୍ରଚାର କରୁଛି । ଏଣୁ ଜଣେ ଡି. ଏସ୍. ପି. ସୁନାବେଡ଼ା ଠାରୁ ବ୍ରହ୍ମପୁର ପର୍ଯ୍ୟନ୍ତ ମୁଁ ଓ ମୋର ପରିବାର ବର୍ଗଙ୍କର ପିଚ୍ଛା ଧରି ଶେଷରେ ମୋ' ନାଁରେ ଥିବା ରିପୋର୍ଟ କଥା ମତେ ଜଣାଇଲେ ।

ମୋଟ ଉପରେ ଏଇ ସବୁ କ୍ରିୟା ପ୍ରତିକ୍ରିୟା ଓଡ଼ିଆ ମାନଙ୍କର ନିଜର ଅକ୍ଷମତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ପରସ୍ପରଙ୍କର ଗୋଡ଼ ଟଣାଟଣି ହୀନମନ୍ୟତାକୁ ମଧ୍ୟ ପ୍ରତିଫଳିତ କରୁଛି । ପୁରୀରେ ମୋର ଆବିର୍ଭାବ ବହୁ ନିର୍ଦ୍ଦେଶକ, ଲେଖକ, ସାଂସ୍କୃତିକ ଠିକାଦାର ମାନଙ୍କୁ ନିଶ୍ଚୟ ଆନନ୍ଦ ଦେଇ ନାହିଁ । ଅନ୍ୟାୟ ଓ ଅସତ୍ୟ ବିରୁଦ୍ଧରେ ବିପ୍ଳବ କଲେ କଥା ଗୁଡ଼ିକ ନିଶ୍ଚୟ ବ୍ୟଙ୍ଗାତ୍ମକ ଓ ଅପ୍ରିୟ ହେବ । ତେଣୁ ଅନେକ ଚେଷ୍ଟା କରି ସୁଦ୍ଧା ମୋ' ଲେଖାରୁ ମୁଁ ବ୍ୟଙ୍ଗକୁ ବାଦ୍ ଦେଇ ପାରୁନା । 'ଆତ୍ମଲିପି'ରେ ମଧ୍ୟ ସେଇଭଳି କରାଯାଇଛି । 'ତା' ପୂର୍ବରୁ ଏକାଡ଼େମୀ ଉତ୍ସବ ପାଇଁ ମୋ'ଠାରୁ ନାଟକ ନେଇ ଓଡ଼ିଶାର କଳା ଅନୁଷ୍ଠାନ ଓ ତାର ଠିକାଦାରମାନେ ନାଟକ

କରେଇ ଦେଇ ନାହାନ୍ତି । ମୋ' ଉପରେ ବଳପ୍ରୟୋଗ କରି ଧମକ ଦିଆ ଯାଇଛି ।

ଏଣେ ଜୀବନ ସହିତ, ଅନ୍ୟ ଏକ ପରିତପ୍ତ । ଯେଉଁ ଅନୁଷ୍ଠାନ ମାନଙ୍କ ପାଇଁ ମୁଁ ଜୀବନର ବହୁ ମହାର୍ଘ ସମୟ ବ୍ୟୟ କରିଥିଲି ସେମାନେ ମତେ ପାନ ଖାଇ ସିଠା ଫୋପାଡ଼ିଲା ପରି ଫୋପାଡ଼ି ଦେଲେ । ସାଂସ୍କୃତିକ ଠିକାଦାରମାନେ କହିଲେ ଆମେ ତମକୁ ଡ୍ରାମ୍ଫ୍ରାସ୍ ଦେଇ ବଡ଼ କରିଛୁ । ମୁଁ କହିବା କଥା ମୁଁ ଜୀବନ ଦେଇ ତମ ଅନୁଷ୍ଠାନକୁ ଗଢ଼ିଛି ଓ ଚଳେଇଛି । ତମ ମାନଙ୍କର ବ୍ୟକ୍ତିଗତ ବିଳାସ ପାଇଁ ମୁଁ ଅନୁଷ୍ଠାନ ଜରିଆରେ ପଇସା କରେଇ ଦେଇଛି ।

ଏଇ ଦ୍ୱନ୍ଦ ଓ ଅହଂର ଝଙ୍କାର କେବଳ ମୋର ଓ ସାଂସ୍କୃତିକ ସାମ୍ରାଜ୍ୟର ନୁହେଁ । ଏହାର ସାମାଜିକ ଓ ରାଜନୈତିକ ପ୍ରୟୋଗୀକରଣ ମଧ୍ୟ ଆଜିକାଲିର ଜୀବନ ଦର୍ଶନ—ଭଳି ମନେ ହୁଏ । ଏହାହିଁ ଗୃହ ଯୁଦ୍ଧ ଠାରୁ ଆରମ୍ଭ କରି ବିଶ୍ୱଯୁଦ୍ଧ ପର୍ଯ୍ୟନ୍ତ ଘଟୁଥିବା ପ୍ରତ୍ୟେକ ବିପର୍ଯ୍ୟୟର କାରଣ । 'ଆତ୍ମଲିପି'ର ମୁଖ୍ୟ ନାୟକ ଏଇ ଭଳି ଏକ ଜୀବନ ସହିତ କମ୍ପ୍ରୋମାଇଜ୍ କରି ପାରି ନାହିଁ ବୋଲି ଭାବାବେଶ ହୋଇ ନିଜକୁ ନିଶ୍ଚିହ୍ନ କରି ଦେଇଛି ଏକ ମହା ପ୍ରସ୍ଥାନର ଅନ୍ତହୀନ ସମୟ ଭିତରେ । ଏବଂ ସାଲସ୍ ଅର୍ଥାତ୍ ଏଇ ଦିବୁ ଯନ୍ତ୍ରଣାରୁ ମୁକ୍ତି ପାଇଁ 'ସହନଶୀଳତା' ବୋଲି ଗୋଟିଏ ଭାବବାଚକ ବିଶେଷ୍ୟ ପଦ ସୃଷ୍ଟି କରି ତାରି ଭିତରେ ହସିବାକୁ ଓ ପୁନରାୟ ଅଭିନୟ କରିବାକୁ ପ୍ରତିଶ୍ରୁତି ଦେଇ ରହିଯାଇଥିବା ଚରିତ୍ରଟି ହେଲା ଶେଳୀ ଦାସ୍ । ଏଇ ନାଟକର ନାୟିକା । ସେ ସହିପାରେ । କେଣୁ ସେ ସୁନ୍ଦର ଭାବରେ ବଞ୍ଚି ପାରିଲା । ସେ ନିଜକୁ ସମାଜରେ ଏକ ସକ୍ରିୟ ଅଙ୍ଗ ଓ ଏ ସମାଜ ପ୍ରତି ତାର କିଛି ପ୍ରୟୋଜନୀୟତା ଅଛି ବୋଲି କେବେ ଭାବି ପାରି ନାହିଁ । ନାଟ୍ୟକାର ନିଜକୁ ଅସଫଳ ବୋଲି ଜାଣି ପାରିଛି ପ୍ରତିଷ୍ଠିତ ସମାଜ ସହିତ ତାର ପ୍ରଥମ ସଂଘର୍ଷ ହୋଇ ସେ ହାରିଗଲା ପରେ । ସେତିକି-ବେଳକୁ ସେ ଜାଣିପାରୁଛି ଯେ ତାର ଆଉ କିଛି କହିବାପାଇଁ ନାହିଁ । କାରଣ ତା'ର ଅନ୍ତିମ ବସ୍ତୁବାଦୀ ପରିଚୟ ହେଲା ସେ ଜଣେ କ୍ରୀତଦାସ । ବିଶ୍ୱ ନାଟ୍ୟ ସମାରୋହରେ ହେଲସିଙ୍କି ଅନୁଷ୍ଠାନରେ ଭାଷଣ ଦେଇ ଏଇ ସାଂସ୍କୃତିକ ଠିକାଦାରି କରୁଥିବା ରାଜନୈତିକ ପ୍ରତିନିଧି ମାନଙ୍କୁ ଦେଖାଇ

ଆୟୋନେସ୍କୋ (Ionesco) କହିଥିଲେ "ଯଇ ମାନଙ୍କୁ ଦେଖିଲେ ପିସ୍ତଲ୍ ଟେ ବାହାର କରିବା ପାଇଁ ମୋ' ହାତଟା ପକେଟ୍‌କୁ ଚାଲିଯାଏ ।" 'ଆତ୍ମଲିପି'ର ନାଟ୍ୟକାର ଦେଖୁଛନ୍ତି: ତାର ସେଧ ସାହସ ନାହିଁ କାରଣ ସେ କ୍ରୀତଦାସ । ଦେହକୁ କୁଆଡ଼େ 'ଘଟ' କୁହାଯାଏ !! ଦେହ ବନ୍ଧକେ ନାଟକ ଲେଖିବା ସମ୍ଭବ ପର ନୁହେଁ । ଏତେ ଅଳ୍ପ କଥା କହି ଶହିଦ ହେଇଗଲେ ତାକୁ ପରବର୍ତ୍ତୀ ପ୍ରତିଯୁଗ ବା ପ୍ରତିସଂସ୍କୃତି ଭିତରେ ଜନତା କହିବେ: ନାଟ୍ୟକାର ଟା ଗୋଟାଏ ବୋକା !! ପରବର୍ତ୍ତୀ ଯୁଗରେ ତା' ପୋଥିସବୁ ମ୍ୟୁଜିଅମ୍‌କୁ ଚାଲିଯିବ । ତା'ପରେ ସଂପୂର୍ଣ୍ଣ ଲିନ । ଏବଂ ସହରର ଛକରେ ଥିବା ତାଙ୍କ ଷ୍ଟାଚ୍ୟୁକୁ କୌଣସି ବିପ୍ଳବୀ ଗ୍ରୁପ ନେତାମାନେ ଭାଂଗି ଦେଇ ପାରନ୍ତି । ତା'ଠୁ ଭଲ ନିର୍ବିକାର ଭାବରେ ଏଇ ମହାଜୀବନର ଅରଣ୍ୟ-ଭିତରେ ନିଶ୍ଚିହ୍ନ ହେଇଯିବା ।

'ଆତ୍ମଲିପିର'ର ଅନ୍ତଃସ୍ୱର ମୁଁ, ମୋ' ଚାରିପଟର ପରିବେଶ ଓ ସମାଜ, ମୋ' ନାଟ୍ୟ ପରମ୍ପରା ଏବଂ ନାଟ୍ୟଚେତା ବ୍ୟକ୍ତିତ୍ୱ ମାନଙ୍କର ଅନ୍ତଃସ୍ୱର ସହିତ ସମାନ । 'ଆତ୍ମଲିପି'ର କଥା ଓ ଭାବ ପ୍ରତ୍ୟେକ ମଣିଷର ପ୍ରକାଶିତ ବା ଅବଦମିତ ଇଚ୍ଛାର ଆଇନା ଭଳି । କାରଣ 'ଆତ୍ମଲିପି'ର ଦର୍ଶକମାନେ ତାର ମୁଖ୍ୟଭାବ ଓ ନାଟକୀୟତାର ପ୍ରଭାବ ଅନୁଭବ କରନ୍ଥନ୍ତି ଏବଂ ସିକ୍ତ ହୋଇଥନ୍ତି ନାଟ୍ୟରସରେ । କେଉଁ ଦର୍ଶକ ପାଖରେ ହୁଏତ ତାହା ଯନ୍ତ୍ରଣାର କଣ୍ଟା ଭଳି; ଆଉ କେଉଁଠି ସୁନ୍ଦର ଫୁଲ ତୋଡ଼ା ଭଳି ଅନେକ ନିର୍ଜନ ଅସଫଳ ମୁହୂର୍ତ୍ତମାନଙ୍କର ସାଥି ।

'ଆତ୍ମଲିପି'ର କଥା ନିଚ୍ଛକ ଜୀବନର କଥା । 'ଇଜମ୍'ର ନୁହେଁ । ସବୁ ଇଜମ୍ ସବୁ ନାଟ୍ୟଶୈଳୀ, ମୁକ୍ତ ଓ ଦର୍ଶନର ଊର୍ଦ୍ଧ୍ୱରେ ଗୋଟିଏ ସୂକ୍ଷ୍ମ ଜୈବିକ ଜୀବନ ବିଦ୍ୟମାନ, ତେଣୁ ଏଇ ନାଟକର ବହୁ ଅଂଶ ମୋ' ନିଜ କଥା, ମୋ' ବନ୍ଧୁ ମାନଙ୍କର କଥା କିମ୍ବା ଆମର ଭିତରୁ କାହାର ଏକ ଚିହ୍ନା ଜଣା କଥା । କିନ୍ତୁ ଦୁଃଖର କଥା, କୌଣସି କାରଣ ନଥାଇ ଏଇ ନାଟକଟି ସାହିତ୍ୟ ଏକାଡେମୀଙ୍କ କର୍ତ୍ତୃକ ଯାଞ୍ଚ କରା ଯାଇଥିଲା ଓ ଏହାର ଅନେକ ସଂଳାପ ମୁଁ କାଟି ଦେଇଛି । ମୁଁ ଯେହେତୁ ନିଜ ଇଚ୍ଛାରେ ଏକାଡେମୀ ପାଇଁ ଲେଖିବାପାଇଁ ରାଜି ହେଇଛି, ସେମାନଙ୍କର ନିର୍ଦ୍ଦେଶକୁ ମାନିବା ମଧ୍ୟ ତା'ର ଅନ୍ତର୍ଗତ । ତାହା ଏମାରଜେନସୀର ସମୟ ।

ବର୍ତ୍ତମାନ ଆକାଶ ଦେଖି ନଥିବା ଲୋକମାନେ ବି ଡହ୍ଲେଣି ପୂର୍ବ ଦିଗରେ କୋଉଠି କୁଆଡ଼େ ସିନ୍ଦୁର ଫାଟିଛି । ତେଣୁ 'ଅମୃତଲିପି'କୁ ଲୋକେ କେମିତି ଗ୍ରହଣ କରିବେ ଜାଣିବାପାଇଁ କୌତୂହଳ ହେଉଛି । ଏଇ ନାଟକରେ ବହୁ ଦେଶୀ ବିଦେଶୀ ପୁସ୍ତକର ପ୍ରଭାବ ପରିଲକ୍ଷିତ ହୋଇପାରେ । କିନ୍ତୁ ସମ୍ପୂର୍ଣ୍ଣ ନିଜର ବୋଲି ଆମେ କାହାକୁ କହିବା ? ମୁଁ କ'ଣ ସମ୍ପୂର୍ଣ୍ଣ ଭାବେ ମୋ' ନିଜର ? ଆଦୌ ନୁହେଁ । ମୁଁ ଏକ ସମୟରେ ବହୁ ବିଖଣ୍ଡିତ । ସେହିଭଳି ମୋ' ଚେତନା ମଧ୍ୟ, ନାଟକ ଚେତନାର ବିକେନ୍ଦ୍ରୀକରଣ ପ୍ରକ୍ରିୟା । ଅନ୍ୟ ଭାଷାରେ କହିଲେ, ଅନେକ ଚେତନାର ସମନ୍ୱୟ । ବାପା ମରିଗଲେ ପୁଅ କାନ୍ଦିବା ଅନୁଭୂତି ଯେପରି ସାର୍ବଜନୀନ ସେଇ ଭଳି ଦେଶୀ/ବିଦେଶୀ ଲେଖକର ଅନୁଭୂତି ମୋ' ଅନୁଭୂତି ସହିତ ସମାନ ହୋଇପାରେ । ତା' ବୋଲି ଆତ୍ମଗ୍ଲାନିରେ ମୁଁ ସେ କଥାଟା କହିବି ନାହିଁ କାହିଁକି ? ବରଂ କହି ଦେଇ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିବା ଶ୍ରେୟସ୍କର ଏବଂ ନିଷ୍କପଟ ବ୍ୟାପାର । କିନ୍ତୁ ପିରାଂଦେଲୋଙ୍କର Six characters ନାଟକ ସହିତ ଏହାର ତୁଳନା କରିବା ଏବଂ ଏହାକୁ 'ନୀଳଲିପି'ର ସଂସ୍କରଣ ଭାବିବା କେତେଦୂର ଯୁକ୍ତିଯୁକ୍ତ ମୁଁ ବୁଝିପାରେ ନାହିଁ ।

ବୁଝିବା ଦାୟିତ୍ୱ ଆପଣମାନଙ୍କର । ଏ ସବୁ ପ୍ରତିକ୍ରିୟା ସତ୍ତ୍ୱେ ମୁଁ 'କାଳୀ ନୃତ୍ୟନାଟ୍ୟ ସଂସଦ, ପୁରୀ'ର ସମସ୍ତ ସଭ୍ୟ ଓ ଶୁଭେଚ୍ଛୁମାନଙ୍କର ସୌଜନ୍ୟରେ ଅଭିଭୂତ ଏବଂ 'ଅମୃତଲିପି' ମୋ'ଠାରୁ ଯେଉଁମାନେ ଲେଖେଇ ନେଇଥିଲେ ସେଇ ଦୁଇ ବନ୍ଧୁ ଶ୍ରୀ ଦୁର୍ଗାଚରଣ ଶତପଥୀ ( ଧୋଇ ) ଏବଂ ଶ୍ରୀ କାଶୀନାଥ ମହାନ୍ତିଙ୍କ ପାଖରେ କୃତଜ୍ଞ । ଏବଂ କୃତଜ୍ଞ ଏଇ ନାଟକର ଶ୍ରେଷ୍ଠ ଦର୍ଶକ ବନ୍ଧୁ କବି ଓ ନାଟ୍ୟକାର ହରିହର ମିଶ୍ରଙ୍କ ପାଖରେ । ନାଟକ ଦେଖିସାରିଲା ପରେ ସେ ଆମ ଗହଣରେ ଗୋଟାଏ ଗୀତର ଭାବ ବିନିମୟ କରିଛନ୍ତି । ଅଧ୍ୟାପକ ବନ୍ଧୁ ବିମଳ ମହାପାତ୍ର 'ଅମୃତଲିପି' ନାଟକ ପାଇଁ ଯେଉଁ ମଞ୍ଚ ସଜ୍ଜା ତିଆରି କରିଥିଲେ ତା'ର ସ୍ମୃତି ସବୁଦିନ ବଞ୍ଚି ଥିବ । ଏଇ ନାଟକର ଭାବ ସମ୍ବଳିତ ଗୀତଟି ପାଇଁ ଆମ ସ୍ମୃତିରେ ଚିରଦିନ ରହିବେ ଶ୍ରୀ ଶିବବ୍ରତ ଦାଶ, ଶ୍ରୀ ଶାନ୍ତନୁ ମହାପାତ୍ର ଓ ଶ୍ରୀ ପ୍ରଣବ ପଟ୍ଟନାୟକ । ସତେ ଯେମିତି 'ଏଇ ଜୀବନଟା ଏକ ନାଟକ' ଗୀତଟି ଆମ ପାଇଁ ରେକର୍ଡ ହୋଇଥିଲା ।

ମୁଁ ସେଇ ଦୁଇଜଣ ଦର୍ଶକଙ୍କ ପାଖରେ ମଧ୍ୟ କୃତଜ୍ଞ । ଜଣେ ଅବସର ପ୍ରାପ୍ତ ପ୍ରାଧ୍ୟାପକ ଏବଂ ଓଡ଼ିଶାର ପ୍ରଖ୍ୟାତ ଗାଳ୍ପିକ, ଅଭିନେତା ଏବଂ ବକ୍ତା ଓ ଦ୍ୱିତୀୟ ଜଣକ ଜଣେ ପ୍ରତିଷ୍ଠିତ ଚଳଚ୍ଚିତ୍ର ପ୍ରଯୋଜକ, ପ୍ରଥମ ଜଣକ କହିଲେ "ଅଧଘଣ୍ଟାଏ କାଳ ମଞ୍ଚ ଉପରେ ଗୋଟାଏ ଭୂତ ନାଚିଲା ।" ଦ୍ୱିତୀୟ ଜଣକ କହିଲେ: "ଆଚ୍ଛା ନାଟକ ଦେଖି ଆସିଲୁ ମଣିଷ, ମୋର ଦୁଇ ଟଙ୍କାର ଭଙ୍ଗ ନିଶାଟା ଛୁଡ଼ିଗଲା !"

ସେମାନେ ଦୁଇଜଣ ଅଧଘଣ୍ଟା ପରେ ଚାଲିଗଲେ । ତା'ପରେ ଆହୁରି ଦୁଇ ଘଣ୍ଟା କାଳ ନାଟକ ଚାଲିଥିଲା ଓ ଲୋକେ ଦେଖୁଥିଲେ ।

ରମେଶ ପାଣିଗ୍ରାହୀ

ପୁରୀ
ରଜ ସଂକ୍ରାନ୍ତି
୧୫ - ୬ - ୭୮

## ॥ ଆତ୍ମଲିପି ॥

ପ୍ରଥମ ପ୍ରଯୋଜନା : ଜୁଲାଇ, ୧୯୭୬ : ଜୟପୁର,
ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ଉତ୍ସବ ।

ଦ୍ୱିତୀୟ ପ୍ରଯୋଜନା : ଅଗଷ୍ଟ, ୧୯୭୬ : ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚ, ପୁରୀ

ତୃତୀୟ ପ୍ରଯୋଜନା : ଫେବୃୟାରୀ, ୧୯୭୮ : ଜଟଣୀ,
ନିଖିଳ ଭାରତ ନାଟକ ପ୍ରତିଯୋଗିତା

( ଶ୍ରେଷ୍ଠ ନାଟକ ରଚନା ପୁରସ୍କାର ପ୍ରାପ୍ତ )

ପରିବେଷଣ : ଜାଲୀ ସଙ୍ଗୀତ ନୃତ୍ୟ ନାଟ୍ୟ ପରିଷଦ, ବାଲିସାହି, ପୁରୀ ।

ଭୂମିକାରେ : ନାଟ୍ୟକାର : ଶ୍ରୀ ନବକିଶୋର ଆଚାର୍ଯ୍ୟ

ନିର୍ଦ୍ଦେଶକ : ଶ୍ରୀ ଦୁର୍ଗାଚରଣ ଶତପଥୀ ( ଧୋଇ )

ପ୍ରଯୋଜକ : ଶ୍ରୀ କାଶୀନାଥ ମହାନ୍ତି

ସାଂସ୍କୃତିକ ଠିକାଦାର : ଶ୍ରୀ ପୂର୍ଣ୍ଣଚନ୍ଦ୍ର ପ୍ରତିହାରୀ ( ହାଶ )
: ଶ୍ରୀ ରାଜକିଶୋର ଶତପଥୀ

ନିର୍ଲିପ୍ତ : ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ତ୍ରିପାଠୀ

ଦୁଷ୍ମନ୍ତ : ଶ୍ରୀ କାହ୍ନୁଚରଣ ଖୁଣ୍ଟିଆ
ଶ୍ରୀ ବିନାୟକ ରଥ

ମାଧବ : ଶ୍ରୀ ଭଗବାନ ନନ୍ଦ
ଶ୍ରୀ କିଶୋରଚନ୍ଦ୍ର ମିଶ୍ର

ଶେଲୀ : ମଞ୍ଜୁ ପ୍ରଧାନ / ରମା

ଦ୍ୱାରକ : ଶ୍ରୀ ଦେବରାଜ ରଣା/ଶ୍ରୀ ଭୂପତି ଭୂଷଣ ମହାନ୍ତି

ପାଣ୍ଡୁଲିପି : ଶ୍ରୀ ଗଙ୍ଗାଧର ବାରିକ
ଶ୍ରୀ ସତ୍ୟନାରାୟଣ ଦାସ

ମଞ୍ଚ ସଜ୍ଜା : ଶ୍ରୀ ବିମଳ ମହାପାତ୍ର

ଆବହ ଶବ୍ଦ/ସଙ୍ଗୀତ : ଶ୍ରୀ ସନ୍ତୋଷ ଘୋଷ/ଶ୍ରୀ ମୋହିନୀମୋହନ ପଟ୍ଟନାୟକ

ଆଲୋକ : ଶ୍ରୀ ରମେଶ ମହାନ୍ତି

ନିର୍ଦ୍ଦେଶନା : ଶ୍ରୀ ଦୁର୍ଗାଚରଣ ଶତପଥୀ ( ଧୋଇ )



আত্মলিপি ।।

ଅନେକ ଅସଂପୂର୍ଣ୍ଣ ନାଟକର ଥାକ ଥାକ ଚନ୍ଦ୍ରା ଭିତରେ ଶୋଇ ଯାଇଛନ୍ତି ନାଟ୍ୟକାର ।

ମଧ୍ୟରାତ୍ରି ।

ହଠାତ୍ ବାହାରୁ କବାଟ ଖଟ୍ ଖଟ୍ ହେବା ଶବ୍ଦ ।

ନାଟ୍ୟକାରଙ୍କ ଠାରୁ କୌଣସି ଉତ୍ତର ନାହିଁ ।

କବାଟ ବାଡ଼େଇବା ଶବ୍ଦ ତୀବ୍ରତର । ବାହାରେ ଗୋଟାଏ ଅର୍ଦ୍ଧେ କୁକୁର ଭୁକିଲେ ।

"ନାଟ୍ୟକାର ! ନାଟ୍ୟକାର !"

ନାଟ୍ୟକାର ଚମକି ଉଠି ବସିଲେ । ବାହାରୁ ପୁଣି ଶୁଭିଲା :

"ନାଟ୍ୟକାର ! ନାଟ୍ୟକାର !!"

ନାଟ୍ୟକାର ।। ( ନିଦ ବାଉଳା ସ୍ୱରରେ ) ଯାଉଛି, ଯାଉଛି, ଗୋଟାଏ ମିନିଟ୍ । ଓଃ ! ( ବିରକ୍ତ ହୋଇ ) କହୁଛି ପରା ଯାଉଛି ।

[ ନାଟ୍ୟକାର କବାଟ ଖୋଲିଲେ ଓ ଏକ ବୃଦ୍ଧ ନୁହେଁ— ଯୁବକ ନୁହେଁ ବ୍ୟକ୍ତି ଓସାରିଆ ହସଟିଏ ମୁହଁରେ ଧରି ଘର ଭିତରକୁ ପଶିଲେ । ପଛରେ ତାଙ୍କର ଗୃହସ୍ଥ । ସେ ବର୍ତ୍ତମାନ ପାଇଁ ଅଦୃଶ୍ୟ ]

ଆପଣ··· କିଏ ଆପଣ ?

ଠିକାଦାର ।। ( ଜବରଦସ୍ତ ଘର ଭିତରକୁ ପଶି ଆସୁ ଆସୁ ) ହେ··· ହେ··· ହେ··· ହେ··· ସାଂସ୍କୃତିକ ଠିକାଦାର, ( ଢ'ଣ ଗୋଟାଏ ଖୋଜୁ ଖୋଜୁ ) ଆପଣ ତାହେଲେ ସେଇ ନାଟ୍ୟକାର ? ଯା'ହଉ, ଆପଣଙ୍କ ସାଙ୍ଗରେ ଦେଖା

ହୋଇଗଲା, ଦେଖା ନ ହୋଇଥିଲେ ମୁଁ କନ୍ଟ୍ରାକ୍ଟ ଖୁବ୍ ସ୍ତ୍ରୀଗି ଯାଇଥାନ୍ତି । ଏଇଠି ବସିବା ପାଇଁ ଚୌକି ନାହିଁ ?

ନାଟ୍ୟକାର ।। ( ବିରକ୍ତ ହୋଇ ) ସାଂସ୍କୃତିକ ଠିକାଦାର କିଏ ?

ଠିକାଦାର ।। ମୁଁ ଜଣେ, ( ରାଗିଯାଇ ) କେତେ ଥର କହିବାକୁ ପଡ଼ିବ ମୁଁ ଜଣେ 'ଏ' କ୍ଲାସ ସାଂସ୍କୃତିକ ଠିକାଦାର ବୋଲି ?

ନାଟ୍ୟକାର ।। ( ଚମକି ଉଠିଲେ ) 'ଏ' କ୍ଲାସ ସାଂସ୍କୃତିକ ଠିକାଦାର ? କାଇଁ, ମୁଁ ତ ଆପଣଙ୍କ ବିଷୟରେ...

ଠିକାଦାର ।। ବୁଝିଲି, ସାଧାରଣ ଜ୍ଞାନ ପରୀକ୍ଷାରେ ତମେ ନିଶ୍ଚୟ ଫେଲ୍ ହୋଇଥିବ । ( ଖୁବ୍ ହସ ) ଏତେ ସବୁ ଖବର ରଖୁଥିଲେ ତ ତମେ ଆଇ. ଏ. ଏସ୍. ପାଇଥାନ୍ତ ! ନାଟକ ଲେଖୁଥାନ୍ତ କାହିଁକି ?

ନାଟ୍ୟକାର ।। ( ଅବାକ୍ ହୋଇ ) ସ୍ତ୍ରୀ' ଭିତରେ ତା'ହେଲେ ଗୋଟାଏ ଠିକାଦାର...

ଠିକାଦାର ।। ସ୍ତ୍ରୀ ଭିତରେ ନୁହେଁ, ଅନେକ ଯୁଗରୁ । ଆବହମାନ କାଳରୁ ମୁଁ ସଂସ୍କୃତିର ଠିକା ନେଇ ଆସିଛୁ ଓ ଆସୁଥିବ ମଧ୍ୟ । କୋଉଠାଏ ଗଲା ?

ନାଟ୍ୟକାର ।। କ'ଣ ?

ଠିକାଦାର ।। କାମ, ତମ କାମ କୋଉଠାଏଁ ଗଲା ? ବର୍ତ୍ତମାନ କ'ଣ କରୁଥିଲ ?

ନାଟ୍ୟକାର ।। ଶୋଇଥିଲି । ନିଦରେ ଶୋଇ ଯାଇଥିଲି ।

ଠିକାଦାର ।। ଓ ! ତା' ମାନେ ଚେଇଁ ରହି ଶୋଇନା ? ଭଲ । ଗୁଡ୍ ବୟ । ନାଟକ ଲେଖା କୋଉଠାଏଁ ଗଲା ?

ନାଟ୍ୟକାର ।। ନାଟକ ? ପ୍ରାୟ ସରି ଗଲାଣି ।

ଠିକାଦାର ।। ଦିଅ, ମୁଁ ନିବି ।

ନାଟ୍ୟକାର ।। ସରି ଗଲାଣି ମାନେ... ସରିନି କିନ୍ତୁ ଆପଣଙ୍କୁ କାହିଁକି ମୁଁ ନାଟକ ଦେବି ?

ଠିକାଦାର ।। ସଟ୍ ଅପ୍ । ତମ ଘର କେଉଁଠି ? ଦକ୍ଷିଣ ? ଦେଖିବ ଏଇନା ମ୍ୟାଜିକ୍ କରି ତମକୁ ଗୋଟାଏ ନାଲିଆ ଲଙ୍କାମରିଚ କରି ଦେବି !

ନାଟ୍ୟକାର ॥ ଆପଣ ଏମିତି ପଚାରୁଛନ୍ତି କାହିଁକି ?

ଠିକାଦାର ॥ ଆହୁରି ରାଗିଗଲେ ନେଳିଡ ପକେଇବ, ଚଟଣୀ କରିଦେବ, ଝୁରୁଧାଣି କରିଦେବ । ନାଟକ ଲେଖିବ କି ନାହିଁ ?

ନାଟ୍ୟକାର ॥ ନାଟକଟେ ଲେଖିବା ଯେ କି ଯନ୍ତ୍ରଣାଦାୟକ ବ୍ୟାପାର ଆପଣ ବୁଝିବେନି । କବିତା ନୁହେଁ ଯେ ହବ୍‌ବୁ ହୋଇଗଲେ ବାହାରି ପଡ଼ିବ !

ଠିକାଦାର ॥ ଖୁବ୍ ବେଶୀ ବକ୍ ବକ୍ କରୁଛ । ପାଣ୍ଡୁଲିପିଟା ଦିଅ, ମୁଁ ଯାଏ ।

ନାଟ୍ୟକାର ॥ ଖାଲି ସଂଳାପଗୁଡ଼ିକୁ ଆଉ ଥରେ ଟିକିଏ··· ମାନେ··· ଦେଖି ନେଉଥିଲି ।

ଠିକାଦାର ॥ ଆଉ ଥରେ ଦେଖିବା କ'ଣ ଦରକାର ?

ନାଟ୍ୟକାର ॥ କଥା ହେଲା ସାଂସ୍କୃତିକ ଜଙ୍ଗଲରେ ଆଜି କାଲି ଅନେକ ମାଙ୍କଡ଼ ତ··· ସେଇଥି ପାଇଁ ଅନେକ ନାଟକର ଧାନକ୍ଷେତ-ଆଡ଼କୁ ଡେଉଁଛନ୍ତି ଆପଣଙ୍କଭଳି ।

ଠିକାଦାର ॥ ନାଟକଟା ଶେଷ ହେଲଣି ନା ନାହିଁ ?

ନାଟ୍ୟକାର ॥ କହିଲି ନା ସଂଳାପଗୁଡ଼ିକ ଉପରେ ପୁଣି ଥରେ ଆଖି ବୁଲାଇ ଆଣୁଛି !

ଠିକାଦାର ॥ ନାଟକଟା ଶେଷ ନ ହେଉଣୁ ? ଇଏ କି ପ୍ରକାରର ଲେଖା ?

ନାଟ୍ୟକାର ॥ ମୁଁ ସେମିତି କରେ ।

ଠିକାଦାର ॥ ତମେ ନାଟକଟା ଲେଖିନା ତା'ହେଲେ ?

ନାଟ୍ୟକାର ॥ ( ପାଣ୍ଡୁଲିପିଟା ଖୋଜୁ ଖୋଜୁ ) ନାଁ, ମୁଁ କହୁଥିଲି··· ଏଇଠି ନାଟକଟା ଥିଲା··· ଏଇତ··· ସେଇଟାକୁ ପଢୁ ପଢୁ ମୁଁ ଶୋଇ ଯାଇଥିଲି ।

[ ପୁଣି ଥରେ ପାଣ୍ଡୁଲିପିଟାକୁ ଖୋଜିଲେ । ପାଇଲେ ନାହିଁ । ]

ଠିକାଦାର ॥ ବୁଝିଲି । ସେମାନେ ମାଲ୍‌ଫାଲ୍ ସବୁ ଠିକ୍ ଯୋଗେଇ ଥିଲେ ତମକୁ ?

ନାଟ୍ୟକାର ॥ 'ମାଲ୍' ?

ଠିକାଦାର ॥ କେତେ ବୋତଲ ମଦ ଦେଇଛନ୍ତି ?

ନାଟ୍ୟକାର ॥ ସେ ବ୍ୟବସ୍ଥା ଆପଣଙ୍କର କ'ଣ ଦରକାର ?

ଠିକାଦାର ॥ ମୁଁ ସାଂସ୍କୃତିକ ଠିକାଦାର । ଦେଶରେ ଲେଖକମାନେ ଠିକ୍ ପ୍ରେରଣା ପାଉଛନ୍ତି କି ନାହିଁ ଦେଖିବା ମୋର ଆଦର୍ଶ କାମମାନଙ୍କ ଭିତରୁ ଗୋଟେ । ବେଶ୍, ଇଏ ଗଲା ମାଲ୍ । ଆଉ 'ଫାଲ' ହେଲା··· ଫାଲ୍ (ଗୋଟିଏ ଗଣେଶ ମୂର୍ତ୍ତି ଦେଖେଇଲା ଭଳି ହାତର ମୁଦ୍ରା କଲେ) 'ଟୋକୀ', ଯୋଗେଇଛନ୍ତି ? ଏମିତି ଆବାକାବା ହେଇ ଗ୍ୱହିଁଚ କ'ଣ ? ବୁଝି ପାରୁନଛି ? ସେଇଥିପାଇଁ ନାଟକ ଲେଖୁଚ । ମୁଣ୍ଡରେ ଯଦ ଆଉ କିଛି ମସଲା ଥାଆନ୍ତା ଭବିତା ଲେଖି ପାରନ୍ତ···

ନାଟ୍ୟକାର ॥ ସେ ଅଭ୍ୟାସ ମୋର୍ ନାହିଁ ।

ଠିକାଦାର ॥ ଆଉ ? କ'ଣ ପବିତ୍ର ? ତମେ ଜଣେ ପବିତ୍ର ଚରିତ୍ରବାନ୍ ଲୋକ ବୋଲି ବୁଝେଇବାକୁ ଗ୍ୱହିଁଚ ? (ଲୋକମାନଙ୍କୁ) ଭାଇ ଓ ଭଉଣୀମାନେ ! ଇଏ ହେଉଛନ୍ତି ଆଜିର ନାଟ୍ୟକାର । ଆଉ ମୁଁ ହେଲି ଏ ଦେଶର ସାଂସ୍କୃତିକ ଠିକାଦାର । ସଂସ୍କୃତି ଯେତେ ଦିନ ଏ ଦେଶରେ ବଞ୍ଚିବ··· କେବଳ ଆମ୍ଭମାନଙ୍କ ଦ୍ୱାରା ହିଁ ବଞ୍ଚିବ । ଆମେ ସବୁ ଡାଯ୍ୟାସ ଉଆର କଲେ ଏମାନେ ନାଚିବେ, ଆମେ ଡାଯ୍ୟାସ ନ ହେଲେ ଏମାନେ ସଂସ୍କୃତିର ମର୍ଜି ବୁଝି ପାରିବେ ନାହିଁ, ଏମିତି ଅନେକ ନାଟ୍ୟକାର ଆମେ ଦେଖିଲୁଣି । ଚେଷ୍ଟା କଲେ କାଲି ତମେ ଜଣେ ନାଟ୍ୟକାର ହେଇ ପାରିବ । ତେଣୁ ଆମ ମତରେ କେହି ପବିତ୍ର ଆଉ ଚରିତ୍ରବାନ୍ ବୋଲି କହି ଏମିତି ଗ୍ୱଡାଗ୍ୱ ବଡ଼ ହେଇ ଯାଇ ପାରିବ ନାହିଁ, ଆପଣ ଏଇ ଜଂରୁମାନଙ୍କୁ ଚହ୍ନି ରଖନ୍ତୁ ।

[ ଠିକାଦାରଙ୍କର ଏପରି ବ୍ୟବହାରରେ ନାଟ୍ୟକାର ଆଶ୍ଚର୍ଯ୍ୟ, ଅଥଚ ଅସହାୟ ହୋଇ ]

ନାଟ୍ୟକାର ।। ଓଃ ! ଆପଣ ବଡ଼ ଅଦ୍ଭୁତ ଲୋକ ଦେଖୁଛି ! ଖୁବ୍ ପିଇଛନ୍ତି ବୋଧହୁଏ ?

ଠିକାଦାର ।। ପିଇବା ଆମର କାମ ! ପିଲେଇବା ଆମର କାମ, ନ ହେଲେ ସଂସ୍କୃତି ବଞ୍ଚିବ ନାହିଁ । ( ଟିକଏ ଧରେ ) ଦିଅ, ପାଣ୍ଡୁଲିପି ଦିଅ, ମୁଁ ଯାଏ···

ନାଟ୍ୟକାର ।। ( ପାଣ୍ଡୁଲିପିଟି ଖୋଜୁ ଖୋଜୁ ) ପାଣ୍ଡୁଲିପିଟା ମିଳୁନି ।

ଠିକାଦାର ।। ମିଳୁନି ନୁହେଁ । ପାଣ୍ଡୁଲିପିଟା ଲେଖା ହୋଇନି ।

ନାଟ୍ୟକାର ।। ବିଶ୍ୱାସ କରନ୍ତୁ···

ଠିକାଦାର ।। ହଉ, କହୁଚ ଯେତେବେଳେ ବିଶ୍ୱାସ କରୁଚି । ନାଟକ ଭିତରେ ସାଂପ୍ରତିକ ସାଂସ୍କୃତିକ ଚେତନା ଅଛି ?

ନାଟ୍ୟକାର ।। ଅଛି ମାନେ··· ନାହିଁ··· ମାନେ··· ସାଂପ୍ରତିକ ସାଂସ୍କୃତିକ ଆଭିମୁଖ୍ୟ ମାନେ ?

ଠିକାଦାର ।। ଏଇ··· ଯେମିତି ହେଲା ଜଗନ୍ନାଥ ସଂସ୍କୃତି··· ଝିମା ଖେଇ ସଂସ୍କୃତି··· ପଞ୍ଚସଖା ସଂସ୍କୃତି··· ଗଜପତି ସଂସ୍କୃତି··· ସଂସ୍କୃତି ମାନେ ତ ଖାଲି ଏସ୍ଥା । ଅନ୍ତତଃ ଏସ୍ଥା ବୋଲି ଦଳେ ସାଂସ୍କୃତିକ ଲୋକ ହଇହାଲ୍ଲା କରୁଛନ୍ତି !

ନାଟ୍ୟକାର ।। ଆପଣ କବିମାନଙ୍କ ପାଖକୁ ଯାଆନ୍ତୁ, ସେମାନେ ପାରିବେ । ନାଟକ ଭିତରେ ଏଗୁଡ଼ା ରହି ପାରିବ ନାହିଁ ।

ଠିକାଦାର ।। ରହି ପାରିବ, କଥା ହେଲା ନାଟ୍ୟକାରମାନେ ଟିକଏ ମୋଟାବୁଦ୍ଧିଆ ।

ନାଟ୍ୟକାର ।। ସେ ଯା'ହେଉ ; ଏତେଗୁଡ଼ାଏ କଣ୍ଡିସନ୍ ଭିତରେ ମୁଁ ଲେଖି ପାରିବିନି ।

ଠିକାଦାର ।। ଚରିତ୍ର ସଂଖ୍ୟା ଦଶ ଭିତରେ··· ନାୟିକା ଚରିତ୍ର ନ ଥିଲେ ଭଲ ।

ନାଟ୍ୟକାର ।। ହେଇ ପାରିବନି ।

ଠିକାଦାର ।। କମର୍ସିଆଲ୍ ଷ୍ଟେଜ୍‌ରେ ହେଇ ପାରୁଥିବ ଓ ସାଂସ୍କୃତିକ ଦୌଡ଼ରେ ଆଗେଇ ପାରୁଥିବ ।

ନାଟ୍ୟକାର ।। ମୋ' ଦେଇ ହବନି ।

ଠିକାଦାର ॥ ଅତି ବେଶୀ ହେଲେ ଗୋଟିଏ ନାରୀ ଚରିତ୍ର ଥିବ । ଏକରୁ ବେଶୀ ନୁହେଁ ।

ନାଟ୍ୟକାର ॥ କାହିଁକି ? ଦେଶରେ କ'ଣ ନାରୀ ନାହାନ୍ତି ?

ଠିକାଦାର ॥ ଅଭିନୟ କରିବା ନାରୀ ନାହାନ୍ତି ।

ନାଟ୍ୟକାର ॥ ଅଭିନୟ କରିବା ତ ନାରୀର ଧର୍ମ ।

ଠିକାଦାର ॥ ସେ ସବୁ ମୁକ୍ତି ଚଳିବନି । ଶୀଘ୍ର ପାଣ୍ଡୁଲିପି ଦିଅ ।

ନାଟ୍ୟକାର ॥ ମୁଁ ନାଟକ ଲେଖି ପାରିବି ନାହିଁ ।

ଠିକାଦାର ॥ ଅଲବତ୍ ଲେଖିବ । ( ଟିକିଏ ରହି ) ସଂସ୍କୃତର ଠିକା ନେଇ ଦୁଇ ହଜାର ବର୍ଷ ହେଇଗଲା । ଏମିତି ଅନେକ ଲେଖକ ଆସିଲେଣି ଆଉ ମଲେଣି । ମୁଁ କିନ୍ତୁ ସେମାନଙ୍କ ଠାରୁ ଠିକ୍ ଦରକାରୀ ନାଟକ ଆଦାୟ କରିଛି ।

ନାଟ୍ୟକାର ॥ ମୋ' ନାଁଟା ନାଟ୍ୟକାର ତାଲିକାରୁ କାଟି ଦିଆଯାଉ ।

ଠିକାଦାର ॥ ମୋଟେ ନୁହେଁ । ତମକୁ ଏ ନାଟକ ଲେଖିବାକୁ ପଡ଼ିବ । ଖେଳ ଲାଗିଛି ? ମୁଁ ମାଗଣା ଆସିଛି ଏଇ ଅଧରାତିରେ ?

ନାଟ୍ୟକାର ॥ ( ତ୍ରାମାରେ କନ୍ଦଳଭଳି ) Get out. ଆପଣ ଏଇଠୁ ଚାଲିଯାଆନ୍ତୁ ।

ଠିକାଦାର ॥ ( ଆଦୌ ଉତ୍ତ୍ୟକ୍ତ ନ ହୋଇ ଭିଲେନ୍ ଭଳି ହସି ) ଏତେ ସହଜରେ ମୁଁ ଯାଉନି । ଅନେକ ନାଟକରେ ଗେଟ ଆଉଟ୍ ଶବ୍ଦ ବ୍ୟବହାର ହେଲାଣି, କିଛି ନୂଆ ଡାଇଲଗ୍ କୁହ । ନ ହେଲେ ତମର ତଣ୍ଟି ଚିପି ନାଟକ ଆଦାୟ କରିବି ।

ନାଟ୍ୟକାର ॥ କ'ଣ ଜବରଦସ୍ତ ?

ଠିକାଦାର ॥ ବାହାରେ ମୋର ଗୃମସ୍ତ ଠିଆ ହେଇଛି । ଡାକିବି ତାକୁ ?

ନାଟ୍ୟକାର ॥ ଗୃମସ୍ତ କିଏ ?

ଠିକାଦାର ॥ ଗୃମସ୍ତ । ଗୃମସ୍ତ ପହଲମାନ୍ !

[ ତାଳି ମାରି ରାଜକୀୟ ଚୁଟକାରେ ଇଙ୍ଗିତ ଦେଲେ ଓ ଗୃମସ୍ତ ହାଜର ହେଲା ]

ଗୃମସ୍ତ ॥ ଗରିବ୍ ପିଲା ହାଜର ହେଲା ଅବଧାନ !

ଠିକାଦାର ॥ ଗୃମ୍‌ଗୃ ! ଏଇ ନାଟ୍ୟକାର କହୁଚ ନାଟକ ଲେଖିବନାଇଁ ।

ଗୃମଗୃ ॥ ( ଗୋଟାଏ ସ୍ପିଙ୍ଗ୍ ଛୁରୀ ବାହାର କରିଚ ) ଏଇ ଛୁରୀଟା ଖାଲି ନାଟ୍ୟକାରର ବେକ ପାଇଁ ଉଆରି ହେଇଥିଲି ହଜୁର୍ !

ଠିକାଦାର ॥ ଦୁଇ ମିନଟ୍ ସମ୍ଭାଳି ଯାଅ ।

ଗୃମଗୃ ॥ ହଜୁର, ଆପଣ କହୁଛନ୍ତି ଯେତେବେଳେ ସମ୍ଭାଳି ଯାଉଚୁ ।

ନାଟ୍ୟକାର ॥ ଆପଣମାନେ ମୋ’ ଉପରେ ବଳ ପ୍ରୟୋଗ କରିବେ ?

ଠିକାଦାର ॥ ସିଧା ଆଙ୍ଗୁଠିରେ ଘିଅ ନ ବାହାରୁଚ ଯେତେବେଳେ···

ନାଟ୍ୟକାର ॥ ଏ ଛୁରୀବାଲାଟା କଏ ?

ଠିକାଦାର ॥ ଗୃମ୍‌ଗୃ, ସଂସ୍କୃତ ଭିତରେ ଯୋଉଠି ଯାହା ଅଦରକାରୀ ସବୁ କାଟି ଉଡ଼େଇ ଦେବା ତାର କାମ ।

ନାଟ୍ୟକାର ॥ ସଂସ୍କୃତ··· ସଂସ୍କୃତ··· ସଂସ୍କୃତ !! ଗୃରିଆଡ଼େ ବିଷାକ୍ତ ଜୀବାଣୁ ଭଳି ଏଇଥିରୁ ଗୁଡ଼ାଏ ବଛେଇ ହୋଇ ଯାଇଛନ୍ତି ଦେଶସାରା । ଏମିତି ଗୁଡ଼ାଏ ସଂସ୍କୃତ ଉପରେ ଛେପ ପକେଇବାକୁ ଇଚ୍ଛା ହଉଚ ମୋର । ସଂସ୍କୃତ ନାଁରେ ପରସ୍ପରର କୁତ୍ସା ରଟନା··· ମୁଁ ବଡ଼ କି ସିଏ ବଡ଼ର ଆତ୍ମପ୍ରଗୃର ଓ ଚରିତ୍ର ସଂହାର । ଗୋଷ୍ଠୀ, କ୍ଲବ୍, ସଂଘ, ସାହିତ୍ୟ, ପତ୍ରିକା, ସଂସ୍ଥା, ସରକାରୀ ଗ୍ରାଣ୍ଟ୍··· ତା’ପରେ ପଦବୀ ପାଇଁ ଗୋଡ଼ ଟଣାଟଣି··· ଏମାନେ ସମସ୍ତେ ଗୋଟାଏ ଗୋଟାଏ ମାନସିକ ରୋଗୀ··· ମେଗାଲୋମାନିଆର ପେସେଣ୍ଟ୍··· ମୁଁ ଏଇ ପଣ୍ଡିତମ୍ମନ୍ୟକାତର ଅମଣିଷମାନଙ୍କ ଠାରୁ ଦୂରରେ ରହିବାକୁ ଗୃହେଁ ।

ଗୃମଗୃ ॥ ହଜୁର୍ ଛୁରୀଟା ଚଲେଇ ଦେବି ଏଇ ନାଟ୍ୟକାର ବେକରେ ?

ଠିକାଦାର ॥ ତମ ଭାଷଣ ଶୁଣି ଚାମ୍‌ଚା ମୋର ରଗି ଗଲାଣି ।

ଚାମଚା ॥ ଏଇ ଲାଟକ୍ ଲେଖାଳିର ଜିଭଟା କାଟି ଆଣିବି ମାଲିକ୍ ?

ଠିକାଦାର ॥ ନାଟ୍ୟକାର ! ଏଣିକି ଭାଷଣ ଦବା ବନ୍ଦ କର ।

ଚାମଚା ॥ ଏଇ ଲାଟକ୍ ଲେଖାଳୀର ଇଷ୍ଟକ୍ ସରିଗଲାଣି ହଜୁର୍ !

ଠିକାଦାର || ତମେ ଜଣେ ମୃତ ଲେଖକ । କେବେ କୌଣସି ଏକ ସମୟରେ ତମେ ନାଟକ ଲେଖୁଥିଲ । ବର୍ତ୍ତମାନ ଆଉ ଲେଖି ନ ପାରି ଏଇଥିରୁ ଘୁଞ୍ଚାଏ କହୁଚ···

ନାଟ୍ୟକାର || ମୁଁ ନାଟକ ଲେଖିବା ପାଇଁ ଠିକା ନେଇନ ।

ଠିକାଦାର || ମୁଁ କିନ୍ତୁ ଓଡ଼ିଆ ସଂସ୍କୃତିର ଠିକାଦାର । ସାତ ଲକ୍ଷ ବର୍ଷ ବୟସ ମୋର । ତମଠୁ ନାଟକ ଲେଖିବା ପାଇଁ ମୁଁ ଆବିର୍ଭାବ ହେଇଚି ।

ନାଟ୍ୟକାର || କାହିଁକି ଲେଖିବି ? ହାନ ହାନ, ଗାଡ ଗାଡ, ନିଜକୁ କ୍ଷୟ କରି, ସ୍ନାୟୁ, ତନ୍ତୁ ଓ ପ୍ରାଣକୋଷକୁ ଟିକି ଟିକି କରି କାଟି ମୁଁ ଲେଖିଲେ ନାଟକ ନାଁରେ ଘୁଞ୍ଚାଏ ପ୍ରହସନ ହବ··· ନାଁ ନେବେ ଏଇ ସାଂସ୍କୃତିକ ଠିକାଦାରମାନେ··· ମନ୍ତ୍ରୀ ଆସି ଉଦ୍‌ଘାଟନ କରିବେ ·· ଦର୍ଶକମାନଙ୍କର ମନୋରଞ୍ଜନ ହବ··· ଆଉ··· ଆଲୋକ ସମ୍ଭାରର ଅନ୍ତରାଳରେ··· କୋଉ ଏକ ଅନ୍ଧାରୁଆ କୋଣରେ ହଜିଯିବ ନାଟ୍ୟକାର !! ଯୋଉମାନଙ୍କର ସମ୍ବଳ ଅଛି··· ଯୋଉମାନେ ବାହାରେ ନିଜ ନାଁରେ ବିଜ୍ଞାପନ ଦିଅନ୍ତି, ସେମାନଙ୍କର କଥା ଅଲଗା, କିନ୍ତୁ ଯୋଉମାନେ ନିଷ୍ପାପର ! ସେମାନେ କ'ଣ କରିବେ ? ଲୋକଙ୍କ ପାଖରେ ନିଜକୁ ବଳି ଦେଉଥିବେ ! ନା ମୁଁ ନିଜକୁ ଅତ୍ୟାଗୃହୀତ ହେବାକୁ ଦେବିନାହିଁ ।

[ ଏଇତକ କହି ଦେଇ ନାଟ୍ୟକାର ଖୁବ୍ କ୍ଳାନ୍ତ ଭାବେ ଟଳି ଟଳି ବସି ପଡ଼ିଲେ, ସାଂସ୍କୃତିକ ଠିକାଦାର ଉଦାସ ଦୃଷ୍ଟିରେ ଥରେ ଚାହିଁଲେ ନାଟ୍ୟକାରଙ୍କ ଉପରକୁ ଓ ଚାମ୍‌ଚାକୁ ଡାକିଲେ ]

ଠିକାଦାର || ଚାମ୍‌ଚା !

ଚାମଚା || ହଜୁର୍ !

ଠିକାଦାର || ଏଇ ନାଟ୍ୟକାରକୁ ଏ ପର୍ଯ୍ୟନ୍ତ ପ୍ରେରଣା ମିଳିନାହିଁ ।

ଚାମଚା || ମିଳିନାହିଁ ହଜୁର୍ ।

ଠିକାଦାର || ଏଇ ନାଟ୍ୟକାରକୁ ଏ ପର୍ଯ୍ୟନ୍ତ ମାଲ୍ ମିଳିନାହିଁ ।

ଗୁମସ୍ତ ॥ ମିଳନାହିଁ ହଜୁର୍ ।

ଠିକାଦାର ॥ ଫାଲ୍ ମଧ୍ୟ ମିଳନାହିଁ ?

ଗୁମସ୍ତ ॥ ମିଳିଲାଭଳି ଦିଶୁନାହିଁ ହଜୁର୍ ।

ଠିକାଦାର ॥ ଶୀଘ୍ର ଯାଇ ସେମିତି ବନ୍ଦୋବସ୍ତ କର୍‌ଅ ।

ଗୁମସ୍ତ ॥ ହଜୁର୍ ।

[ ଠିକାଦାର ଦେଖିଲେ ଗୁମସ୍ତ ସଲମ୍ ଠୁକାଇ ଚାଲିଗଲା । ସେ ରହସ୍ୟମୟ ଭାବେ ହସିଦେଲେ । ତାଙ୍କ ହସ ଶୁଣିଲେ ମନେହେବ ସତେ ଯେମିତି ମଧ୍ୟଯୁଗୀୟ ନାଇଟ୍ ( knight ) ହସୁଛନ୍ତି, ତାପରେ ଦୟା ଦେଖାଇଲାଭଳି ନାଟ୍ୟକାରଙ୍କୁ ପ୍ରଶ୍ନ କଲେ ]

ଠିକାଦାର ॥ ହଁ । ତା'ହେଲେ ଏ ନୂଆ ନାଟକଟା କୋଉ ବିଷୟରେ ଲେଖିଛ ?

ନାଟ୍ୟକାର ॥ ମୂର୍ଖଙ୍କଭଳି ଗୁଡ଼ାଏ ପ୍ରଶ୍ନ ପଚାର ନାହିଁ । କୋଉ ବିଷୟରେ ଲେଖିଛ !! କୋଉ ବିଷୟରେ ଲେଖିଛ ମାନେ ? କି ଅଜବ ପ୍ରଶ୍ନ !! ନାଟକଟା ପଢ଼ିଲେ ଜାଣିବ— ଦେଖିଲେ ଜାଣିବ··· ସବୁ ସଂଳାପ ଭିତରେ ଅଛି··· ଅଭିନୟ ଭିତରେ··· ଆଲୋକ ଓ ଶବ୍ଦପ୍ରକ୍ଷେପ ଭିତରେ··· ମଞ୍ଚ ସଜ୍ଜା ଭିତରେ··· ମୁଁ ଜାଣେନା ମୁଁ କ'ଣ ଲେଖେ । ପ୍ରଥମେ ଗୋଟାଏ ରୂପକଳ୍ପ ମନକୁ ଆସେ ଏବଂ ତାର ଭିତରୁ ଗୁଡ଼ାଏ ମୁହଁ ଦିଶନ୍ତି । ସେମାନେ ମତେ ହାତ ଠାରି ତାଙ୍କ ଭିତରକୁ ଡାକନ୍ତି ଓ ମୁଁ ଚାଲିଯାଏ ଏକ ଅଜଣା ଅଶୁଣା ଅଗନାଗ୍ନି ବନସ୍ତ ଭିତରକୁ । ସେ ଅପରିଚିତ ମୁହଁଗୁଡ଼ାକ କ୍ରମେ କ୍ରମେ ପରିଚିତ ହୋଇଯାନ୍ତି ଓ ମୁଁ ଏକ ନୂତନ ମହାଦେଶ ଆବିଷ୍କାର କରି ପ୍ରଥମେ ଚକିତ ଓ ମୁଗ୍‌ଧ ହୁଏ ! ସେଇଟା ମୋର ନାଟକ !

ଠିକାଦାର ॥ ଏଇଥର ଯୋଉ ନାଟକ ଲେଖିଲ ତାର ରୂପକଳ୍ପ କ'ଣ ?

ନାଟ୍ୟକାର ।। ମୁଁ ପ୍ରତି ମୁହୂର୍ତ୍ତରେ ମୋ' ଦେହରେ ଛୁରୀ ଚଳେଇ ଚାଲିଚି । ପ୍ରତ୍ୟେକରୁ ରକ୍ତ ବାହାରୁଚି । ମୁଁ ମାଟିରେ ଗଡୁଚି । ରକ୍ତ ଆଉ ଧୂଳି ମିଶେଇ ସେଇ ନାଲି ନାଲି କାଦୁଅଗୁଡ଼ାକ ମୋ ଦେହରେ ବୋଳି ହେଇଯାଉଚି ଓ କ୍ଷତ ସ୍ଥାନଗୁଡ଼ାକ ପୁଣି ଭର୍ତ୍ତି ହେଇ ଯାଉଚି । ମୁଁ ପୁଣି ନିଜକୁ କାଟୁଚି ଗୋଟାଏ ଛୁରୀ ଧରି ଓ ସେଇ ନାଲି ନାଲି କାଦୁଅଗୁଡ଼ାକୁ ଜାବୁଡ଼ି ଧରିଚି । ଠିକ୍ ଯେମିତି ଜନ୍ମ ହେବା ଆଗରୁ ଶିଶୁଟିଏ ରକ୍ତ ବୁଦ୍‌ବୁଦା ଭିତରେ ସୁଡୁବୁଡୁ ହେଉଥାଏ ।

ଠିକାଦାର ।। ଆହା... ବାସ୍ତବ...

ନାଟ୍ୟକାର ।। ଏଇଥର ମୁଁ ମୋ' ନାଟକରେ ନିଜେ ଗୋଟାଏ ଚରିତ୍ର ।

ଠିକାଦାର ।। ତମେ ତ ସବୁବେଳେ ସେଇଆ କର । ରକ୍ତ ଜୁଡ଼ୁବୁଡୁ କାଦୁଅ ହେଲା ତମର ରଂଗମଞ୍ଚ ଓ ତମେ ନିଜେ ନାଟ୍ୟକାର ରଂଗମଞ୍ଚକୁ ଜାବୁଡ଼ି ଧରିଚ ।

ନାଟ୍ୟକାର ।। ମୁଁ ଏଇଥର ନାଟକର ନାଟକ ଲେଖୁଚି । ମୁଁ ନାଟକ ସମ୍ପର୍କରେ କହିବି... ନାଟକ ସମ୍ପର୍କରେ ଏକ ନୂତନ ଦୃଷ୍ଟିଭଙ୍ଗୀ ।

ଠିକାଦାର ।। ତା'ମାନେ ଏକ ନୂଆ ଚଷମା ଲଗେଇବାକୁ ପଡ଼ିବ ନା ?

ନାଟ୍ୟକାର ।। ( ଖୋଜି ଖୋଜି ପାଣ୍ଡୁଲିପିଟା ପାଇଗଲେ ) ମୋ' ନାଟକ... ମୋ' କାହାଣୀ... 'ଅମୃତଲିପି' ।

ଠିକାଦାର ।। ପାଣ୍ଡୁଲିପିଟା ମିଳିଗଲା ତା'ହେଲେ ? କ'ଣ ଲେଖିଚ ପଢ଼ିଲ ଦ'ଖିବ ପ୍ରଷ୍ଟା ।

ନାଟ୍ୟକାର ।। କହିଲିନା... ନାଟକଟା ପୂରା ହେଇନି ।

ଠିକାଦାର ।। କିନ୍ତୁ ଅନ୍ୟ ନାଟକବାଲା ଅଛନ୍ତି ଯେଉଁମାନେ ମଞ୍ଚେ ଦେଖିଲା ମାନେ ଆରମ୍ଭ କରି ଦିଅନ୍ତି ପଢ଼ା । ପଢ଼ା ତ ନୁହେଁ... ଏକକ ଅଭିନୟ ।

ନାଟ୍ୟକାର ।। ଠିକ୍ ଅଛି, ମୁଁ ତା'ହେଲେ ଆରମ୍ଭଟା ପଢୁଚି । ( ଟିକିଏ ରହି ) ମାନେ... ମୋ' ନିଜ ଲେଖା ମୁଁ ନିଜେ ପଢ଼ିବା ପାଇଁ ଆଦୌ ଭଲ ପାଏନା ।

ଠିକାଦାର ॥ ପଚ୍ଛେ ।

ନାଟ୍ୟକାର ॥ ନାଟକଟା ଏମିତି ଆରମ୍ଭ ହୋଇଛି । ପ୍ରଥମ ଦୃଶ୍ୟ, ଅନେକ ଅସଂପୂର୍ଣ୍ଣ ନାଟକର ଚିନ୍ତା ଭିତରେ ଶୋଇ ଯାଇଛି ନାଟ୍ୟକାର । ମଧ୍ୟରାତ୍ରି, ହଠାତ୍ ବାହାରୁ କବାଟ ଖଟ୍ ଖଟ୍ ହେବା ଶବ୍ଦ । ନାଟ୍ୟକାରଙ୍କ ଠାରୁ କୌଣସି ଉତ୍ତର ନାହିଁ । କବାଟ ବାଡ଼େଇବା ଶବ୍ଦ ଖାନ୍ତରେ । ବାହାରେ ଗୋଟାଏ ଅଧେ କୁକୁର ଭୁକିଲେ । ହଠାତ୍ ବାହାରୁ ଶୁଭିଲା : 'ନାଟ୍ୟକାର ! ନାଟ୍ୟକାର !' ନାଟ୍ୟକାର ଚମକି ଉଠି ବସିଲେ । ବାହାରୁ ପୁଣି ଶୁଭିଲା : 'ନାଟ୍ୟକାର ! ନାଟ୍ୟକାର !' ନାଟ୍ୟକାର ନିଦବାଉଳା ସ୍ୱରରେ କହିଲେ : 'ଯାଉଛି ଯାଉଛି··· ଗୋଟାଏ ମିନିଟ୍ ।' ପାନଆ ଖଣ୍ଡେ ଧରି ପ୍ରଥମେ ସେ ମୁଣ୍ଡର ଅନାବନା ବାଳ-ଗୁଡ଼ାକୁ ଠିକ୍ କଲେ ଏବଂ ସ୍ୱା' ଭିତରେ ପୁଣି କବାଟ ବାଡ଼େଇବା ଶବ୍ଦ ଶୁଭିଲା । ନାଟ୍ୟକାର ବିବ୍ରତ ହୋଇ ଚିତ୍କାର କଲେ : 'ଓଃ ! What the Hell ! କହିଲି ପରା ଯାଉଛି !' ( ନିଜେ ନାଟ୍ୟକାର ଉପରୋକ୍ତ କଥାଗୁଡ଼ାକ ଅଭିନୟ କରୁଥିଲେ । ନାଟ୍ୟକାର କବାଟ ଖୋଲିଲେ ଓ ଆଗନ୍ତୁକଙ୍କୁ ପଚାରିଲେ : ) 'ଆପଣ ? କିଏ ଆପଣ ? ଏତେ ରାତିରେ···'

ଠିକାଦାର ॥ ( ଖୁବ୍ ରାଗିଯାଇ ) ତମେ ମୋ ବିଷୟରେ ନାଟକ ଲେଖିଛ ? ମୁଁ ଏ ନାଟକ ଦେଖିବି ନାହିଁ । ହୁଃ !! ସାକ୍ଷାତ୍କାର୍ କରିବା ପାଇଁ ଆଉ କିଏ ଲୋକ ମିଳିଲେନି ନାହିଁ ?

[ ଠିକ୍ ଏତିକିବେଳେ ବାହାର ଦରଜାରେ ଆଘାତ କରିବା ଶବ୍ଦ ଶୁଣାଗଲା ]

ନିର୍ଦ୍ଦେଶକ ॥ ( ବାହାରୁ ) ନାଟ୍ୟକାର ! ନାଟ୍ୟକାର !

ନାଟ୍ୟକାର ॥ ଯାଉଛି, ଯାଉଛି । ଗୋଟାଏ ମିନିଟ୍ !

[ ପାନଆ ଖଣ୍ଡେ ଧରି ଅନାବନା ବାଳଗୁଡ଼ାକୁ ସଜାଡ଼ୁ ସଜାଡ଼ୁ ପ୍ରବେଶ କଲେ ନିର୍ଦ୍ଦେଶକ ରବି ଦାସ ]

ନର୍ଦ୍ଦେଶକ ।। ( ପ୍ରବେଶ କରି ) ହାଏ !
ନାଟ୍ୟକାର ।। କହେ। ? ଡ୍ରିରେକ୍ଟର ସାହେବ ! ତମେ ?
ନର୍ଦ୍ଦେଶକ ।। କୋଉଠିଯାଏଁ ଗଲ ?
ନାଟ୍ୟକାର ।। କ'ଣ ?
ନର୍ଦ୍ଦେଶକ ।। କାମ । ତମ କାମ କୋଉଠିଯାଏଁ ଗଲ ? ବର୍ତ୍ତମାନ କ'ଣ କରୁଥିଲ ?
ନାଟ୍ୟକାର ।। ଶୋଇ ଯାଇଥିଲି । ଜଦରେ ଶୋଇ ଯାଇଥିଲି । ତା'ପରେ...
ନର୍ଦ୍ଦେଶକ ।। ଓ ! ତା ମାନେ ଚେଇଁ ରହି ଶୋଇନା ? ଭଲ, ଗୁଡ୍ ବୟ୍ । ନାଟକ ଲେଖା କୋଉଠିଯାଏଁ ଗଲ ?
ନାଟ୍ୟକାର ।। ତା'ପରେ ଇଏ ଆସି ପହଞ୍ଚି ଗଲେ ।
ନର୍ଦ୍ଦେଶକ ।। କିଏ ? ଇଏ କିଏ ?
ଠିକାଦାର ।। ( ଭ୍ରୂକୁଟି କୁଞ୍ଚନ କରି ) ଓ ! ତମେ ତା'ହେଲେ ସେଇ ନର୍ଦ୍ଦେଶକ ?
ନର୍ଦ୍ଦେଶକ ।। କୋଉ ନର୍ଦ୍ଦେଶକ ?
ଠିକାଦାର ।। ଯିଏ ଏଇ ଲେଖକର ନାଟକ କରେଇବେ !
ନର୍ଦ୍ଦେଶକ ।। ଆପଣ କିଏ ?
ଠିକାଦାର ।। ଏତେ ସବୁରେ ଜଣେ ନାଟ୍ୟକାରକୁ ଡିସ୍‌ଟର୍ବ କଲାବାଲା ତମେ କିଏ ? ( ପାଖକୁ ଲାଗିଆସି ) ମ୍ୟାଜିକ୍ କରିଦେବି, ତମ ପାଟିରୁ ଆଉ କଥା ବାହାରିବ ନାହିଁ ।
ନର୍ଦ୍ଦେଶକ ।। ( ଆଶ୍ଚର୍ଯ୍ୟ ହୋଇ ) ପ୍ରଲାପକର୍ତ୍ତାଟି କିଏ ?
ଠିକାଦାର ।। ଯାହା ପଚାରିବା କଥା ସବୁ ସିଧା ପଚାର ।
ନର୍ଦ୍ଦେଶକ ।। ( ସାମାନ୍ୟ ଶଙ୍କିତ ହୋଇ ବୁଝିଲେ ) ମାଲ୍‌ପାଣି ଟିକିଏ ବେଶୀ ପିଇ ଦେଇଛ ।
ନାଟ୍ୟକାର ।। ଇଏ ହେଉଛନ୍ତି... ମାନେ... ତାଙ୍କ କହିବା ଅନୁଯାୟୀ ସାଂସ୍କୃତିକ ଠିକାଦାର ।
ଠିକାଦାର ।। ହେଃ ହେଃ ହେଃ ହେଃ... ସାଂସ୍କୃତିକ ଠିକାଦାର । ସାତ ଲକ୍ଷ ବର୍ଷ ବୟସ... କିନ୍ତୁ ଦୁଇ ହଜାର ବର୍ଷ ହେଲା ମୁଁ ସଂସ୍କୃତିର ଠିକା ନେଇ ଆସିଛି... ତମେ କେତେଟା ନାଟକରେ ନର୍ଦ୍ଦେଶନା ଦେଇଛ ଏ ପର୍ଯ୍ୟନ୍ତ ?

ନର୍ଦ୍ଦେଶକ ।। ହ୍ରସାବ ରଞ୍ଜିନ ।

ଠିକାଦାର ।। ଗୋପାଳ ଦାସଙ୍କୁ ଜାଣିଛ ?

ନର୍ଦ୍ଦେଶକ ।। ନାଟକ କର୍‌ଏ ।

ଠିକାଦାର ।। ନର୍ଦ୍ଦେଶକ ଗୋପାଳ ଦାସ ।

ନର୍ଦ୍ଦେଶକ ।। ପିଲାବେଳର ସାଙ୍ଗ, ନଙ୍ଗଳା ହୋଇ ଆମେ ଧୂଳି ଖେଳୁଥିଲୁ ।

ଠିକାଦାର ।। ସେଇଥିରେ ମୋର କିଛି ଯାଏ ଆସେ ନା । ( ଘୁଞ୍ଚିଆସି ନାଟ୍ୟକାର ପାଖକୁ ଯାଇ ) ତମେ କ'ଣ ଏଇ ନର୍ଦ୍ଦେଶକଙ୍କୁ ନାଟକ ଦବ ?

ନାଟ୍ୟକାର ।। ତମେ କ'ଣ କହିବାପାଇଁ ଗୃହୁଁଛ ?

ଠିକାଦାର ।। ମୁଁ ଗୃହେଁ ତମ ବନ୍ଧୁ ଗୋପାଳ ଦାସ ନର୍ଦ୍ଦେଶନା ଦେଉ ! ତାର୍ ନର୍ଦ୍ଦେଶନାର ଥିଓରୀ ହେଲା ପୃଥିବୀର ସର୍ବାଧୁନିକ ପଦ୍ଧତି··· ବୈଜ୍ଞାନିକ !! ଖାଲି ବୈଜ୍ଞାନିକ ରଂଗମଞ୍ଚ ନୁହେଁ··· Ultra-Scientific Theatre··· ବୈଜ୍ଞାନିକ ହ୍ରସେଇନ··· ବୈଜ୍ଞାନିକ ମେକ୍ ଅପ୍··· ବୈଜ୍ଞାନିକ ଆଲୋକ ସଂଜ୍ଞବ ସେଇଠି··· ବୈଜ୍ଞାନିକ ଶବ୍ଦପ୍ରକ୍ଷେପ··· ତମେ ସେଇଠିକି ଗୃଲ । ତମ ନାଟକ ବୈଜ୍ଞାନିକ ପଦ୍ଧତିରେ ମଞ୍ଚସ୍ଥ ହେବ··· ବାହାରେ ଗୋଟାଏ ଚୁମ୍ବକ ଲଗେଇ ଦିଆଯିବ । କେବଳ ବୈଜ୍ଞାନିକ ପଦ୍ଧତିର ନାଟକ ବୁଝି ପାରୁଥିବା intellectual ମାନେ ଟାଣି ହୋଇ ସେଇଠିକି ଆସିବେ···

ନାଟ୍ୟକାର ।। ମନ୍ଦ ନୁହେଁ । ତେବେ ନାଟକଟା ଶେଷ ହେଲା ପର୍ଯ୍ୟନ୍ତ ଦର୍ଶକ ରହିବେ ତ ?

ଠିକାଦାର ।। କିଛି ଯାଏ ଆସେ ନାହିଁ, ଗୋପାଳ ଦାସ କହୁଛି ଜଣେ ଦର୍ଶକ ଦେଖିଲେ ମଧ୍ୟ ତା' ନାଟକ ସକ୍‌ସେସ୍‌ଫୁଲ୍ !

ନର୍ଦ୍ଦେଶକ ।। ଦେଖ, ସାଂସ୍କୃତିକ ଠିକାଦାର । ତମ କଥାବାର୍ତ୍ତାରୁ ଜଣାପଡୁଚି ତମେ ଖୁବ୍ ବେଶୀ ପିଇ ଦେଇଚ ଏବଂ···

ଠିକାଦାର ।। ତମର ବି କିଛି ଗୋଟାଏ ନିଶା କରିବା ଉଚିତ । ଗୋପାଳ ଦାସ ନିଶା ଖାଏ ।

ନାଟ୍ୟକାର ॥ ଦେଖନ୍ତୁ ମୁଁ ବର୍ତ୍ତମାନ ଲେଖାଲେଖି ଆରମ୍ଭ କରିବି··· ମାନେ ·· ରିଭିଜନ୍ କାମଟା ଆରମ୍ଭ କରିବି··· ଆପଣ ଏଠି ଗୋପାଳ ଦାସର ଚରିତ୍ରଚିତ୍ରଣ କରନ୍ତୁ ନାହିଁ ।

ନିର୍ଦ୍ଦେଶକ ॥ ବୁଝିଲ ନାଟ୍ୟକାର··· ଇଏ ତମର Latest ନାଟକ ପାଇଁ ଜଣେ ଭଲ କମେଡ଼ିଆନ୍ ହେବେ··· 'ସାଂସ୍କୃତିକ ଠିକାଦାର' !! ( ହସିଲେ )

ଠିକାଦାର ॥ ତମେ ମୋର ଅପମାନ କରୁଚ ? ଆମେ ତମକୁ ଡାୟାସ୍ ହେଲ୍‌ବାଲ୍··· କଟକରେ ଯୁଗ ଯୁଗଟା କ୍ଲାର୍କ ମୁଁ ସେକ୍ରେଟାରୀ··· ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳେ ମୁଁ ରାଜ୍ୟ-ସ୍ତରୀୟ ବାଲ୍ୟଲୀଳା କରେଇଥିଲି··· ତିନି ଥର ଆସାମ ଯାଇଚି··· ଥରେ ବାଙ୍ଗାଲୋର··· ଯୁଗଟା ଉତ୍ତର ଭାରତୀୟ ଭାଷା ଓ ଦୁଇଟି ଦକ୍ଷିଣ ଭାରତୀୟ ଭାଷା ଜାଣିଛି··· ମୋ' ବଡ଼ ଭାଇ ସଂସ୍କୃତିମନ୍ତ୍ରୀଙ୍କର ବଟଲ୍ ଫ୍ରେଣ୍ଡ୍··· ଭୁବନେଶ୍ୱରରେ ରାଜ୍ୟସ୍ତରୀୟ ନାଟକ ସେମିନାର୍ ଚାଲିଥିଲାବେଳେ ମୋ' disposal ରେ ଦୁଇଟା ସରକାରୀ ଗାଡ଼ି ଥିଲା··· ସ୍ୱାମୀ ପରମ ପ୍ରେମାନନ୍ଦଙ୍କର ଓଁକାର ବର୍ଣ୍ଣନା ବେଳେ ମୁଁ ସଭାପତିତ୍ୱ କରିଛି··· ମହାକାନ୍ତାରର ଭିତରେ ସଂସ୍କୃତିର ବୀଜ ବୁଣିବା ପାଇଁ ମୁଁ ବିଶ୍ୱମିଳନ ଆୟୋଜନ କରିଛି··· କ'ଣ କରି ପାରିଲ ମତେ ? ଆହୁରି ତିନି ଲକ୍ଷ ଉଦାହରଣ ଦେଇଥାନ୍ତି । କିନ୍ତୁ ତମେ ବୁଝିବନି । ଦୁଇ ହଜାର ବର୍ଷର ସାଂସ୍କୃତିକ ଠିକା··· ଆଜି 'ଏ' କ୍ଲାସ ଠିକାଦାର··· ତମେ ତ ଶିଶୁ··· ସଂସ୍କୃତିର ଦୁଗ୍ଧପାନ କରୁଛ ଏ ପର୍ଯ୍ୟନ୍ତ !

ନିର୍ଦ୍ଦେଶକ ॥ ଓ. କେ., ଓ. କେ. । ( ନାଟ୍ୟକାରଙ୍କୁ ) ତମେ ଟିକିଏ ଏଇ character ଟାକୁ study କର ନାଟ୍ୟକାର । ଏଇ ନାଟକରେ କାମରେ ଲଗେଇବା···

ଠିକାଦାର ॥ ଆହେ କାମରେ ଲଗେଇବ କ'ଣ ? ଆମେ ମନକୁମନ କାମରେ ଲାଗିଯିବା ଲୋକ । ସଂସ୍କୃତି ପାଇଁ ଜାନ୍ ଉତ୍ସର୍ଗ କରି ଦେଇଛୁ ।

[ ନିର୍ଦ୍ଦେଶକ ଉତ୍ତେଜିତ ହୋଇ କ'ଣ ଗୋଟାଏ କରିବା ପାଇଁ ଯାଉଥିଲେ ]

ନାଟ୍ୟକାର ।। ଆହା, ନିର୍ଦ୍ଦେଶକ ସାହେବ, ଠିକାଦାରଙ୍କୁ କହିବାକୁ ଦିଅ ।

ନିର୍ଦ୍ଦେଶକ ।। ନୈତ୍‌ନ୍‌ସେନ୍ସ ! କହିବାକୁ ଦେବି ! ଏଇଥିରୁ ଗୋଟାଏ ମଦ୍ୟପ ଆସି ଅଧଘଣ୍ଟାରେ ଏଇଠି ବକ୍ ବକ୍ ହେବ, ଆମକୁ ଡିଷ୍ଟର୍ବ କରିବ··· ଆଉ ମୁଁ ଚୁପ୍‌ଚାପ୍ ରହିଯିବି ?

ନାଟ୍ୟକାର ।। ଆରେ ସିଏ ଡିସ୍‌ଟର୍ବ କରୁ ନାହାନ୍ତି ।

ନିର୍ଦ୍ଦେଶକ ।। ସଟ୍ ଅପ୍ ! ଦ୍ୟାଟ୍‌ସ୍ ଲାଇକ୍ ଏ ଗୁଡ୍ ଠିକାଦାର୍ !

ଠିକାଦାର ।। ହିଁ··· ହିଁ··· ଏମିତି ବେଙ୍ଗ ଭଳି ଫୁଲି ଯାଅନାହିଁ ଡାଇରେକ୍ଟର । ସବୁ ଯୁଗରେ ତମେ କଳାକାରମାନେ ସାଂସ୍କୃତିକ ଠିକାଦାରମାନଙ୍କ ପାଖକୁ ଧାଇଁଛ··· ଚେଲି ମାଗିଛ··· ତାମ୍ବାପଟ୍ଟ ମାଗିଛ···ପାଟକୁଣ୍ଡଳ ଉପାଧି ମାଗିଛ··· ଓ ଆମେ ଅକୁଣ୍ଠିତ ଚିତ୍ତରେ ସେ ସବୁ ଦେଇଚୁ କାରଣ ଆମେ ଜାଣୁ କଳାକାରମାନେ ଟିକିଏ ପାଗେଲା ପ୍ରକୃତିର ଲୋକ । ଦରକାର ପଡ଼ିଲେ ସେମାନଙ୍କୁ ବାଲକୋନି ଉପରୁ ତଳକୁ ଫୋପାଡ଼ି ହୁଏ ଆଉ ଦରକାର ପଡ଼ିଲେ ସେମାନଙ୍କର ଗୋଡ଼ ଧରିବାକୁ ମଧ୍ୟ ଆମେ ପଛଘୁଞ୍ଚା ଦେଉନା, ହେଃ··· ହେଃ··· ହେଃ··· ନାଟ୍ୟକାର ! ତମେ ଖୁବ୍ ଭଲ ଲେଖିଚ··· ଲେଖ··· ମତେ ପୁଣି ଆତୁର ହୁଇ ଗୁରୁ ଜଣ ନାଟ୍ୟକାରଙ୍କ ପାଖକୁ ଯାଇ ପ୍ରେରଣା ଦେବାକୁ ପଡ଼ିବ··· ସ୍ରୋତ ଖାଦ୍ୟ ଆସୁଚି··· କାମ ଆରମ୍ଭ କର··· ଗ୍ରୀନ୍‌ରୁମ୍ ପଦ୍ମଲମାନ୍ ଯାଇଚି··· 'ଫାଲ୍' ଆଉ 'ମାଲ୍' ପହଞ୍ଚିଯିବ··· ସୋ' ଲଙ୍ଗ୍··· !!

( ସାଂସ୍କୃତିକ ଠିକାଦାର ଚାଲିଗଲା ପରେ )

ନିର୍ଦ୍ଦେଶକ ।। ସାଂସ୍କୃତିକ ଠିକାଦାର ନୁହଁନ୍ତି ସେ ସାଂସ୍କୃତିକ ଭୂତ !

ନାଟ୍ୟକାର ।। ଟ୍ୟୁବ୍ ଶପି ଟୁଥ୍‌ପେଷ୍ଟ ବାହାର କଲାପରି ତୁଣ୍ଡି ଶପି ନାଟକ ଆଦାୟ କରିବେ ।

ନିର୍ଦ୍ଦେଶକ ।। ଯା'ହେଉ ଭଲ, ନ ହେଲେ ତମଭଳି ଅଳସୁଆଙ୍କଠୁ ନାଟକ ମିଳନ୍ତା ନାହିଁ ।

ନାଟ୍ୟକାର ॥ ସାଙ୍ଗରେ ଗୋଟାଏ କୁସ୍ତିବାଲା ପହଲ୍‌ମାନ୍ ମଧ୍ୟ ଥିଲା ।

ନିର୍ଦ୍ଦେଶକ ॥ ଓ. କେ. ସେକେଣ୍ଡ୍ ସୋ'ରୁ ଫେରୁଥିଲି । ଭାବିଲି ତମେ ନିଶ୍ଚୟ ଚେଇଁଥିବ, ଆସିଗଲି ।

ନାଟ୍ୟକାର ॥ ନାଟକଟା ଶେଷ ହୋଇନି ।

ନିର୍ଦ୍ଦେଶକ ॥ ଯା' ହଇଚ ଲେଖିଚ ପଢ଼ି ଶୁଣାଅ—

ନାଟ୍ୟକାର ॥ ନାଟକଟା ଏମିତି ଆରମ୍ଭ ହୋଇଚି ।

ନିର୍ଦ୍ଦେଶକ ॥ କ୍ୟାରି ଅନ୍ !

ନାଟ୍ୟକାର ॥ ପ୍ରଥମ ଦୃଶ୍ୟ, ଗଦା ଗଦା ନଥିପତ୍ରର ଥାକ ଭିତରେ ଅଧା ଲେଖା ନାଟକ, ଆଦୌ ନ ଲେଖିଥିବା ନାଟକର ଚିନ୍ତା କରୁ କରୁ ଶୋଇ ଯାଇଛନ୍ତି ନାଟ୍ୟକାର, ହଠାତ୍ କବାଟ ବାଡ଼େଇବାର ଶବ୍ଦ । ନାଟ୍ୟକାରଙ୍କଠୁ କୌଣସି ଉତ୍ତର ନାହିଁ । କବାଟ ବାଡ଼େଇବା ଶବ୍ଦ ତୀବ୍ରତର ହେଲା···

[ ବର୍ତ୍ତମାନ ବାହାର ଦରଜା ପୁଣି ଖଟ୍ ଖଟ ହେଲା, ସତରେ । ଉଭୟେ ଆଶ୍ଚର୍ଯ୍ୟ ଚକିତ ହୋଇ ବାହାରକୁ ଚାହିଁଲେ ]

ନିର୍ଦ୍ଦେଶକ ॥ ତା'ପରେ ?

ନାଟ୍ୟକାର ॥ ( ପଢ଼ିଲେ ) ବାହାରେ ଗୋଟାଏ ଅଧେ କୁକୁର ଭୁକିଲେ··· ( କୁକୁର ଭୁକିବା ଶବ୍ଦ ଶୁଭିଲା ) ଶୁଭିଲା : 'ନାଟ୍ୟକାର ! ନାଟ୍ୟକାର !'

[ ବର୍ତ୍ତମାନ ସତରେ ବାହାର ଦରଜା ପଟୁ ଶୁଭିଲା : 'ନାଟ୍ୟକାର ! ନାଟ୍ୟକାର !' ]

ନାଟ୍ୟକାର ॥ ଅଭିନୟଟା ଠିକ୍ ଏମିତି··· ( ପାନିଆ ଖଣ୍ଡେ ଧରି ମୁଣ୍ଡ କୁଣ୍ଡାଇବା ଅବସ୍ଥାରେ ) ଯାଉଛି, ଯାଉଛି । ଗୋଟାଏ ମିନଟ୍ !

[ ଯାଇ ଦରଜା ଖୋଲିଲେ ଓ ପ୍ରବେଶ କଲେ ପ୍ରଯୋଜକ ]

ହାଏ ! ପ୍ରୋଡ୍ୟୁସର୍ !

ପ୍ରଯୋଜକ ।। ହାଏ ! ରାତି ସାରା ଶୋଇ ପାରିନି । ଖାଲି ନାଟକଟା କେମିତି ଲେଖା ହବ ସେଇ ଚିନ୍ତା । କୋଉଯାଏଁ ଗଲି ? ଆରେ... ରବି ଦାସ୍ ? ତମେ...? ବାଃ... ଲେଖାଟା ତା' ହେଲେ ଶେଷ ହେଇ ଯାଇଛି...? ରାତିର ଶେଷ ପ୍ରହରରେ ନିର୍ଦ୍ଦେଶକ ଓ ନାଟ୍ୟକାର ସେତେବେଳେ ସିଣଥସ୍ ମୁଣ୍ଡରେ ବସିନ୍ତନ୍ତି...

ନିର୍ଦ୍ଦେଶକ ।। ଖୁବ୍ ଭୋକ...

ପ୍ରଯୋଜକ ।। କାର୍ ଭିତରେ ଗୋଟାଏ ଅଧେ ବୋତଲ ହ୍ୱିସ୍କି ପଡ଼ିଥିବ । ଡ୍ରାଇଭରକୁ କହିବ ନେଇ ଆସିବ ?

ନିର୍ଦ୍ଦେଶକ ।। ମାତାଲ କୋଉଠିକାର... କିଏ କହିଲା ଆପଣଙ୍କୁ ହ୍ୱିସ୍କି ଆଣିବା ପାଇଁ ?

ପ୍ରଯୋଜକ ।। ପ୍ରଯୋଜକ ତ ରେସ୍ତୋରାଁବାଲା ହେଇ ନାହାନ୍ତି ଯେ ରାତି ସାଢ଼େ ତିନିଟାରେ ବିରିଆନି, ଗ୍ଲୁହରୁଭ, ଚିଂଗୁଡ଼ି ଭଜା ଧରି ବୁଲୁଥିବ...

ନାଟ୍ୟକାର ।। ମୋ' ପାଖରେ କିଛି ପାଉଁରୁଟି ଓ ଅଣ୍ଡା ସିଝା ଥିଲା ।

ନିର୍ଦ୍ଦେଶକ ।। ଚାଲିବ । ଜଲଦି...

ପ୍ରଯୋଜକ ।। କ'ଣ ଲେଖିଛ ପଢ଼ାଅ ପ୍ରଥମେ, ଏଇ ପେଟୁ ନିର୍ଦ୍ଦେଶକଙ୍କ କଥା ପରେ ବୁଝିବା...

ନାଟ୍ୟକାର ।। ( ପଢ଼ିଲେ, ଏଇଥର କ୍ରମଶଃ ସ୍ପିଡ୍ ଦେଇ ପଢ଼ିବେ ) ଗଦାଗଦା ନଥିପତ୍ରର ଥାକ ଭିତରେ ଅଧା ଲେଖା ନାଟକ, ଆଦୌ ନ-ଲେଖିଥିବା ନାଟକର ଚିନ୍ତା ଏବଂ ନାଟକ ଲେଖିବ କି ନ ଲେଖିବ ଚିନ୍ତା କରୁ କରୁ ଶୋଇ ଯାଇଛନ୍ତି ନାଟ୍ୟକାର । ହଠାତ୍ କବାଟ ବାଡ଼େଇବାର ଶବ୍ଦ । କୌଣସି ଉତ୍ତର ନାହିଁ... କବାଟ ବାଡ଼େଇବା ଶବ୍ଦ ତୀବ୍ରତର ହେଲା... ଏବଂ ଶୁଭିଲା 'ନାଟ୍ୟକାର ! ନାଟ୍ୟକାର !!'

ନିର୍ଦ୍ଦେଶକ ॥ ଏବଂ ତା'ପରେ ପ୍ରବେଶ କଲେ ପ୍ରଯୋଜକ··· ଗୋଟିଏ ବାନଦ୍ର ଉଜମା ପୂନ୍ଧାଇ ଗାଡ଼ି ଭିତରେ କଛି ହ୍ୱିସ୍କି ବୋତଲ ନେଇ ପ୍ରବେଶ କଲେ ପ୍ରଯୋଜକ

ନାଟ୍ୟକାର ॥ ତା' ପୂର୍ବରୁ ନିର୍ଦ୍ଦେଶକ

ନିର୍ଦ୍ଦେଶକ ॥ ତା' ପୂର୍ବରୁ ସାତଲକ୍ଷ ବର୍ଷ ବୟସ୍କ ସାଂସ୍କୃତିକ ଠିକାଦାର

ନାଟ୍ୟକାର ॥ ଓ ତାଙ୍କ ସଙ୍ଗରେ ଜଣେ ଗ୍ରମ୍ୟ ପହ୍ଲମାନ୍ !!

ପ୍ରଯୋଜକ ॥ କବାଟ ଖୋଲିବା ଓ ପ୍ରଥମ ଦୃଶ୍ୟଟି ପଢ଼ିବା ଏକ ପାପଚକ୍ର··· ମୋର ମନେ ହେଉଛି ସେମିତି···

ନାଟ୍ୟକାର ॥ ଏ କବାଟ ବାଡ଼େଇବା ଶେଷ ହେବନି··· ମୋର ପାଣ୍ଡୁଲିପି ଲେଖିବା ଶେଷ ହେବନି··· ମୁଁ ଯା' ଭିତରୁ ମୁକ୍ତ ଚାହେଁ···

ନିର୍ଦ୍ଦେଶକ ॥ ତା'ମାନେ ଏ ନାଟକ ଲେଖା ହେବନି ?

ପ୍ରଯୋଜକ ॥ ଗୋଟାଏ ଉପାୟ ଅଛି । କ'ଣ ଦବ ଦାମ୍ ?

ନିର୍ଦ୍ଦେଶକ ॥ କ'ଣ ?

ପ୍ରଯୋଜକ ॥ ନାଟ୍ୟକାର ଆଉ ପାଣ୍ଡୁଲିପି ପଢ଼ନ୍ତୁ ନାହିଁ··· କବାଟ ବାଡ଼େଇବା ଶୁଣନ୍ତୁ ନାହିଁ ··· କାରଣ ମୁଁ ଲକ୍ଷ୍ୟ କରିଛି ଗୋଟାଏ ଅବସ୍ଥାରୁ ଖସି ପଳେଇବାର ଏକ ମାତ୍ର ଉପାୟ ହେଲା ତା' ଭିତରେ ଆହୁରି ନିବିଡ଼ ଭାବରେ ଜଡ଼ିତ ହେଇ ପଡ଼ିବା···

ନିର୍ଦ୍ଦେଶକ ॥ ମୁଁ ବୁଝି ପାରୁନି, ତମେ କ'ଣ ଗୁଡ଼ାଏ ପ୍ରଳାପ କଲ ?

ପ୍ରଯୋଜକ ॥ ପ୍ରଳାପ କଲି ?

ନାଟ୍ୟକାର ॥ ନା, ନା, ମୁଁ ବି ବୁଝିପାରୁନି ।

ପ୍ରଯୋଜକ ॥ ଏଇଥିରୁ ଜଣାଗଲା : ତମେ କେବଳ ଜଣେ ନାଟ୍ୟକାର । କବି ବା ସମାଲୋଚକଙ୍କ ଭଳି ଇଣ୍ଟେଲେକ୍‌ଚୁଆଲ୍ ନୁହ··· ପାଣ୍ଡିତ୍ୟ ନାହିଁ ତମର ।

ନିର୍ଦ୍ଦେଶକ ॥ ଏଃ ! ବୁଝାଅ ହେ··· ଖାଲି ଗୁଡ଼ାଏ ସମାଲୋଚନା କରି Bore କରନି ।

ପ୍ରଯୋଜକ ॥ ତମେ ନିଜକୁ ନାଟକ ଲେଖିବା ଅନୁଭୂତି ଠାରୁ ବିଚ୍ଛିନ୍ନ କରି ବଞ୍ଚି ଯାଇ ପାର କମ୍ପା ନିଜକୁ ଆହୁରି ନାଟକ

ଭିତରେ ଜଡ଼ିତ କରେଇ ଏଇଥିରୁ ମୁକ୍ତି ପାଇପାର, ତାରଣ ତମେ, ତମ ନାଟକ, ତମ ଦୃଶ୍ୟପଟେ ଯିବା ଆସିବା କରୁଥିବା ମଣିଷ ଓ ପରିବେଶ ଅଲଗା ନୁହନ୍ତି । ତମ ସ୍ମୃତି ଓ ସ୍ୱପ୍ନ, ତମର ସ୍ଥିତି ଓ ସତ୍ତା ·· ତମର କାହାଣୀ ଓ ଜୀବନ ଏକ ।

ନାଟ୍ୟକାର ॥ କ'ଣ ?

ନିର୍ଦ୍ଦେଶକ ॥ କିଛି ବୁଝିଲ ?

ନାଟ୍ୟକାର ॥ ମୁଁ ଓ ମୋର ନାଟକ ଏକ ଓ ଅବିଚ୍ଛିନ୍ନ ।

ନିର୍ଦ୍ଦେଶକ ॥ ତମ କାହାଣୀ ଓ ତମ ଜୀବନ ନାଟକ ଲେଖିଲାବେଳେ ଏକ ହୋଇ ଯାଆନ୍ତି ।

ପ୍ରଯୋଜକ ॥ ତମ ସ୍ମୃତି ଓ ତମ ସତ୍ତା ଗୋଟାଏ ବିନ୍ଦୁରେ ମିଳିତ ହୋଇ ଯାଆନ୍ତି, ତାପରେ ତମ ଭିତରେ ଗୋଟାଏ ଝଡ଼ ଉଠେ । ସବୁ ଶୁଖିଲା ପତ୍ର ଝଡ଼ି ଯାଆନ୍ତି··· ଧୀରେ ଧୀରେ··· କିଛି ନୂଆ ପତ୍ର କଅଁଳି ଉଠନ୍ତି··· ଏବଂ ଅନାଗତ ବସନ୍ତର ଶୁଭଶଙ୍ଖ ବାଜିଉଠେ···

ନାଟ୍ୟକାର ॥ ମୋ' ଭିତରେ ଠିକ୍ ଏମିତି ଗୋଟାଏ ଦରଜା ଠକ୍ ଠକ୍ ହୁଏ··· ଗୋଟାଏ କୁକୁର ଭୁକି ଉଠେ··· ଏବଂ ମୋ ପିଞ୍ଜରା ହାଡ଼ ଥରାଇ କିଏ ଗୋଟାଏ ସମୁଦ୍ରର ହାବୁକା ହାବୁକା ଢେଉ ଭଳି ବାଡ଼େଇ ହେଇଯାଏ, ଡାକେ ନାଟ୍ୟକାର ! ନାଟ୍ୟକାର !!'

ନିର୍ଦ୍ଦେଶକ ॥ ଏବଂ ମୁଁ ସେଇ ପ୍ରଚ୍ଛନ୍ନ ଆହ୍ୱାନକୁ ରକ୍ତ ମାଂସର ଶରୀର ଭିତରେ ଗଢ଼େ··· ସବୁ ଅଣାକାରକୁ ଆକାରରେ ପରିବର୍ତ୍ତିତ କରେ··· ସବୁ ଅବ୍ୟକ୍ତକୁ ବ୍ୟକ୍ତ କରେ···

ନାଟ୍ୟକାର ॥ ସବୁ ଅଶବ୍ଦ ମୋ' ଫଳାପରି ଶବ୍ଦ ହୋଇ ବାହାରିଯାଏ !

ନିର୍ଦ୍ଦେଶକ ॥ ସବୁ ଅନିସ୍ତାର କରିବା ମୁଁ; ନିସ୍ତାରେ ପରିଣତ କରିବା ମୋ ଧର୍ମ ।

ପ୍ରଯୋଜକ ॥ ଏବଂ ତାର ନାମ ନାଟକ··· ଏବଂ ତାର ନାମ ମୋର ନୂଆ ନାଟକ··· 'ଆତ୍ମଲିପି'··· ତମର ଆତ୍ମଲିପି··· ମୋର

ଆମ୍ରପାଲି… ରବି ଦାସ୍‌ର ଆମ୍ରପାଲି… ଏବଂ ଏ ନାଟକର ନାୟିକା 'ଶେଲି'ର ଆମ୍ରପାଲି…

ନାଟ୍ୟକାର || କାରଣ ମୋ ଆମ୍ରପାଲି ଓ ତମର ଆମ୍ରପାଲି ଭିତରେ କିଛି ଫରକ ନାହିଁ…

ନିର୍ଦ୍ଦେଶକ || କାରଣ ରବି ଦାସ୍‌ର ଅନୁଭୂତି, ଈର୍ଷା ଓ ଅସୂୟା କେବଳ ତା'ର ନୁହେଁ…

ପ୍ରଯୋଜକ || କାରଣ ମୋର ସ୍ୱପ୍ନ ଓ ମୋର ଯନ୍ତ୍ରଣା କେବଳ ମୋର ନୁହେଁ । ମୁଁ ଏକ ବିରାଟ ଐତିହ୍ୟ… ଅସଂଖ୍ୟ ଅତୀତ ମଣିଷ ଓ ବର୍ତ୍ତମାନ ସ୍ରୋତର ଗୋଟିଏ ପ୍ରଯୋଜକ ମାତ୍ର !

ନାଟ୍ୟକାର || ଆମର ଚେହେରା ବଦଳିଗଲେ ବି ଆମେ ଏକ । ଆମ ଚରିତ୍ର ଅନେକ ହେଲେ ବି ଆମେ ଏକ… ଆମ ଅନୁଭୂତି ଓ ଯନ୍ତ୍ରଣା ଆଉ ଦୁଇହଜାର ବର୍ଷ ତଳର ଯନ୍ତ୍ରଣା ସହିତ ସମାନ… ଏକବିଂଶ ଶତାବ୍ଦୀର ଯନ୍ତ୍ରଣା ଓ ଅନୁଭୂତି ସହିତ ସମାନ…

ନିର୍ଦ୍ଦେଶକ || ମୋ' ରୂପ ଓ ରୂପକଳ୍ପ ଏଇ ଦର୍ଶକ ମାନଙ୍କର ମାନସିକ ପରିକଳ୍ପନା ସହିତ ସମାନ । ଆମ ଭିତରେ ଲୁଚି ରହିଥିବା ହିଂସ୍ରଜନ୍ତୁ ଓ ଦେବତା, ଆମ ଭିତରେ ଲଚି ରହିଥିବା ଆକର୍ଷଣ ଓ ଘୃଣା… ନାରୀଙ୍କୁ କେନ୍ଦ୍ର କରି ଗତି ଉଠିଥିବା ଈର୍ଷା ଓ ଅନୁରାଗ… ଉପଭୋଗ କରିବାର ଇଚ୍ଛା ଓ ପାପ-ବୋଧ… ସବୁ ହେଉଛି ଅଥଚ ଗୋଟାଏ ଅନ୍ଧାର ଘର ଭିତରେ, କେହି ନ ଦେଖିଲା ଭଳି… ସବୁ କରିଯାଉ କିନ୍ତୁ ରଙ୍ଗ ବଦଳେଇ… ମୁଖା ପିନ୍ଧି… ମୁଁ ବୁଝିଛି— ଏୟା ହିଁ ଅଭିନୟ । ନାଁ କ'ଣ ବନ୍ଧୁଗଣ ? "ଆମ୍ରପାଲି" ନାଟକର ସବୁ କିଛି ଅଭିନୟ ଥାଏ ତା' ହେଉଛି ଏୟା…

ପ୍ରଯୋଜକ || ଏବଂ ରାତି ସାଢେ ଦଶଟାରେ ନିଦ ବଟିକା ଖାଇ ଶୋଇ ନ ପାରି ନାଟ୍ୟକାର ଘରକୁ ଦୌଡ଼ି ଆସିଥିବା ପ୍ରଯୋଜକ ସିଦ୍ଧାର୍ଥ ବର୍ମା ବୁଝେ… ଆଶ୍ଚର୍ଯ୍ୟ ! ସିଦ୍ଧାର୍ଥ ବର୍ମା ପୁଣି କ'ଣ ବୁଝିବ ? ସେ କିଛି ବୁଝେନା… ନାଟ୍ୟକାର

ଲେଖିଥିବା ସଂଳାପ ବ୍ୟଞ୍ଜନା… ଦର୍ଶନ ବ୍ୟଞ୍ଜନା… କେବଳ ସେ ଜାଣେ ମଣିଷର ଦେହରେ ଗୋଟିଏ ଭାଷା… ଯାହା ନ ଥାଇ ସେ ଭାବ ପ୍ରକାଶ କରିପାରେ… ସେଇଥିପାଇଁ ତା’ ମତରେ ‘ଶେଲି’ ଭଳି ଗୋଟାଏ ସ୍କୁଲ୍ ଝିଅ ଓ ଆଇ.ଏ.ଏସ୍ ଅଫିସର ନିର୍ଲିପ୍ତ ପଟ୍ଟନାୟକ ଭିତରେ କୌଣସି ଫରକ୍ ନାହିଁ… କବି ପଞ୍ଚସଖା ମହାନ୍ତି ଏବଂ ସ୍କୁଲ୍ ପିଲାମାନଙ୍କ ଭିତରେ କୌଣସି ଫରକ୍ ନାହିଁ… ମୋ’ କାମ ହେଲା ଏ ସମସ୍ତଙ୍କୁ ଏକାଠି କରିବା…

ନାଟ୍ୟକାର ।। ଆଃ ! ‘ଶେଲି’… କାହିଁ ? ଆମ୍ଭଲିପିର ନାୟିକା କାହିଁ ରହିଯାଏ ?

ନିର୍ଦ୍ଦେଶକ ।। କାହିଁକି ? ଶେଲି କଥା ମନେ ପଡୁଛି ?

ନାଟ୍ୟକାର ।। ଶେଲି ନଥିଲେ ଏ ନାଟକ ଯେ ଲେଖା ହେଇ ପାରନ୍ତା ନାହିଁ… ପ୍ରତିଟି ସଂଳାପ ଭିତରେ ଶେଲିର ଛାପ୍ ସହ ମୁହଁ… ଶେଲିର ନିଷ୍ପାପ ଆଖି ଏବଂ ତା’ ଭିତରର ଗଦାଗଦା ବେଲୁନ୍ ଭଳି ଫାଟି ପଡୁଥିବା କୋହ… ଓଃ ! ଶେଲି କାହିଁ ସିଦ୍ଧାର୍ଥ ? ବର୍ତ୍ତମାନ ଏଇ ମୁହୂର୍ତ୍ତରେ ଶେଲିକୁ ଦେଖିବି…

ପ୍ରଯୋଜକ ।। ( ନିର୍ଦ୍ଦେଶକଙ୍କୁ ଆଖି ମାରି ) ନାଟ୍ୟକାରଙ୍କ ମନର ବରଫ ତରଳିଗଲା… ବୋଧହୁଏ ?

ନିର୍ଦ୍ଦେଶକ ।। ( ନାଟ୍ୟକାରଙ୍କୁ ଲକ୍ଷ୍ୟ କରି ) ତରଳିବା ଆରମ୍ଭ କରୁଛି…

ପ୍ରଯୋଜକ ।। ( ଘଣ୍ଟା ଦେଖି ) ସତ ପାହିଆସିଲାଣି ନାଟ୍ୟକାର… ଶେଲି ଆସୁଥିବ ।

ନିର୍ଦ୍ଦେଶକ ।। ( ଝରକାର ପରଦା ଖୋଲିଦେଲେ… ଦେଖାଗଲା ଫାଟି ଆସୁଥିବା ସିନ୍ଦୁର ) ଏଇ ଦେଖ ନାଟ୍ୟକାର ! ତମ ଝରକା ଦେଇ ସୂର୍ଯ୍ୟୋଦୟର ସ୍ୱପ୍ନ ଝରି ଆସୁଛି… ( ଘରଟାକୁ ସଜାଡ଼ି ସଜାଡ଼ି ) ମୋ’ କାମ ମୁଁ ଆରମ୍ଭ କରୁଛି… ଘରଟାକୁ ମୁଁ ସଜେଇ ଦେଇଛି । ତମେ ବରଂ ବିଶ୍ରାମ କର । ଶେଲି ଆସିଯିବ ।

ପ୍ରଯୋଜକ || ମୁଁ ଶେଲୀକୁ କହିଥିଲି ଆସିବାପାଇଁ, ସେ କଣ୍ଟିନ୍ୟୁ ଆସୁଥିବ ।

ନାଟ୍ୟକାର || ( ଖୁବ୍ ବିକଳ ଭାବରେ ) ଉଃ ! ମୋର ଶେଲୀ କଥା ଖୁବ୍ ମନେ ପଡ଼ୁଛି ସିଦ୍ଧାର୍ଥ… ଖୁବ୍ ମନେ ପଡ଼ୁଛି… ତାକୁ ଏମିତି ନିଷ୍ଠୁର ଭାବରେ ପିଟିବା ମୋର ଉଚିତ ନଥିଲା… ବିଚାରୀ… ଝିଅଟା କି କଷ୍ଟରେ ଅଛି… ( ମୁହଁ ତଳକୁ କରି ବସିରହିଲେ )

ପ୍ରଯୋଜକ || ( ନିର୍ଦ୍ଦେଶକଙ୍କୁ ) ଘଟଣା କଣ ?

ନିର୍ଦ୍ଦେଶକ || He is in love with Shely. I say !

ପ୍ରଯୋଜକ || ଓ ! ପେରେମ ! ନାଟ୍ୟକାର ହିରୋଇନ୍‌କୁ ଏକବାରେ ପେରେମ କରି ପକାଇଲେ ଦିନ ଘଣ୍ଟା ଭିତରେ… ଶଳା, କି ଅସୁବିଧା କଥା… କେମିତି ଯେ ଇଏ ସବୁ ପ୍ରେମ ହୁଏ…!!

ନିର୍ଦ୍ଦେଶକ || ଆପଣ ଯାଆନ୍ତୁ ( ଧମକେଇଲା ଭଳି ) ସିଦ୍ଧାର୍ଥ ବାବୁ । ଗୋଟାଏ କାଠ ପଥରର ମଣିଷ ଆପଣ ଏସବୁ ସେଣ୍ଟିମେଣ୍ଟ… ମୋଟେ ବୁଝି ପାରିବେନି । ନାଟ୍ୟକାର ! ତମେ ବିଶ୍ରାମ କର । ମୁଁ ଶେଲୀକୁ ପଠେଇ ଦେବି । ତାଙ୍କୁ ଆଉ ଡିଷ୍ଟର୍ବ କରନ୍ତୁ ନାହିଁ…

[ ପ୍ରଯୋଜକ ଓ ନିର୍ଦ୍ଦେଶକ ଚାଲିଗଲେ । କ୍ରମଶଃ ଆବହ ସଙ୍ଗୀତରେ ଓ ଆଲୋକରେ ଏକ ସ୍ୱପ୍ନିଳ ମାଦକତାର ଆଭାସ ଦିଆଯିବ । ନାଟ୍ୟକାର କିଛି ଲେଖିବା ପାଇଁ ଚେଷ୍ଟା କଲେ ଏବଂ ଏ ପୃଥିବୀରୁ ନିଜକୁ ବିଚ୍ଛିନ୍ନ କରିଦେଇ ଆଉ ଏକ ମାୟାର ଦ୍ୱିତୀୟ ପୃଥିବୀ ସହିତ ଜଡ଼ିତ କରାଇ ଦେଲେ । ଆଖିରେ ତାଙ୍କର ଏକ ସ୍ୱପ୍ନିଳ ଆବେଗ । ଆହୁରିପି ଲେଖିଲାବେଳକୁ ତାଙ୍କର ଖୁବ୍ ମନେ ପଡ଼ୁଥିଲା ଶେଲୀର କଥା । ବର୍ତ୍ତମାନ ଆବହ ସଙ୍ଗୀତ ରୂପେ "ଏଇ ଜୀବନଟା ଏକ ନାଟକ" ରେକର୍ଡଟି ବ୍ୟବହାର କରାଯିବ ।

ଗୀତର ପ୍ରଥମ ଅନ୍ତରା ବାଜିଲା ଭିତରେ ନୃତ୍ୟରତା ସ୍ୱପ୍ନ-ବିଳାସିନୀ କାବ୍ୟ ନାୟିକାପରି

ନାଟ୍ୟକାରଙ୍କ ତନ୍ଦ୍ରାର ସ୍ୱାଳ୍ପନା ବାସ୍ତବାସ୍ତୁ
ଇଲାକାରୁ ପହଁଞ୍ଚ ପହଁଞ୍ଚ ଆସିଛୁ ଶେଲି
ଗୀତଟି ଏଇ ପର୍ଯ୍ୟନ୍ତ ବାଜବ : ]

ଏଇ ଜୀବନଟା ଏକ ନାଟକ
ତାର କଳଙ୍କିତ ମୁଁ ନାୟକ
ସେଇ ଚନ୍ଦ୍ରମା ପର ପିନ୍ଧିଛୁ
ବହୁ କଳଙ୍କ କଳା ଢଳକ !! ୦ ||

ଏଇ ନାଟକର ଅଭିନୟ ସାଶ
ଯେବେ ଯିବ ଚାଲି ମୁଁ ଗୋ ଯିବ ଚାଲି
କେହି ଦେଉ ବା ନ ଦେଉ ବାହାଦୁରୀ
କଛୁ ଫୁଲମାଳ ଆଉ କରତାଳି
ସବୁ ନିନ୍ଦାକୁ ମୋର ଦେଦେ ବୋଲି
ଏଇ ଜୀବନ ମଣିବ ସାର୍ଥକ ।
ଯଦି କାହାର ମନେ ମୁଁ ଦେଇପାରେ ଢଳେ
ଆନନ୍ଦ ଭରା ଆଲୋକ || ୧ ||

[ ଏଇ ଗୀତ ମଝିରେ ଶେଲି ଆସି ପହଞ୍ଚୁଛୁ
ନାଟ୍ୟକାରଙ୍କ ପାଖରେ ଏବଂ ନାଟ୍ୟକାରଙ୍କ
କାନରେ ସ୍ୱପ୍ନାବଷ୍ଟ ସ୍ୱରରେ କହୁଛୁ : ]

ଶେଲି || ନାଟ୍ୟକାର ! ··· ନାଟ୍ୟକାର ! ଉଠ ! ··· ଉଠ !
ଏ ପରିବେଶରେ ତମେ କୁଏତ ନାଟକ ଲେଖିପାରିବ ନାହିଁ ।
ଚାଲ । ତମକୁ ମୁଁ ନେଇଯିବ ମୋ' ଘରକୁ ।

[ ଶେଲି ନାଟ୍ୟକାରଙ୍କୁ ନେଇ କଳ୍ପନାରେ ଉଡ଼ି
ଉଡ଼ି ଚାଲିଯାଇଛୁ । କ୍ରମଶଃ ମଞ୍ଚର ଆଲୋକ
ବିଭିନ୍ନ ରଙ୍ଗର ଝାପ୍ସା ଝାପସା ବର୍ତ୍ତୁଳ
ଭିତରେ ପ୍ଲାବିତ ହୋଇଯାଇଛୁ । ତାର
ଭିତରେ ପ୍ରବେଶ କରିଛନ୍ତି ନର୍ଦ୍ଦେଶକ ।
ଆବହ ସଂଗୀତ ଆଲୋକର ଧାବଧାରୀ ସହିତ
ସମନ୍ୱିତ ଲୟରେ ଏକ ସିମ୍ଫୋନି ସୃଷ୍ଟି କରୁଛୁ ।]

ନିର୍ଦ୍ଦେଶକ ॥ ( ଚିତ୍କାର କରି ଉଠିଲେ ) ଗ୍ରୁମ୍ସ୍… Come on… ଏଇ ପରିବେଶକୁ ବଦଳାଇବାକୁ ପଡ଼ିବ ।

[ ସେଇ ଝାପ୍‌ସା ଆଲୁଅ ଭିତରେ ଦାଖଲ ଗ୍ରୁମସ୍ ପ୍ରବେଶ କରିଛନ୍ତି ଏବଂ ମଞ୍ଚର ସାଜସରଞ୍ଜାମ ବଦଳାଇବାରେ ଲାଗିଛି । ସେଇ ଝାପ୍‌ସା ରଙ୍ଗ ଓ ଶବ୍ଦର କୁହୁକ ଭିତରେ ନିର୍ଦ୍ଦେଶକ ମଞ୍ଚଟିକୁ ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେଲେ ଏବଂ ଆଲୋକ ସ୍ଥିର ହେଲା ବେଳକୁ ଦେଖାଗଲା ମଞ୍ଚଟି ଅନ୍ୟରୂପ ନେଇଛି । ଠିକ ଶୋଭାର ଘରଭଳି । ମଞ୍ଚସଜ୍ଜା ସମ୍ପୂର୍ଣ୍ଣ ପ୍ରକାଶବାଦୀ ଶୈଳୀରେ ସଜ୍ଜିତ ହେବା ଦରକାର । ନିର୍ଦ୍ଦେଶକ ଇଚ୍ଛା କଲେ ଝରକା, ତା' ସନ୍ଥପଟେ ବଗିଚା, ଘର ଭିତରେ ଟେଲିଫୋନ୍, ଫୁଲ୍‌ଦାନୀ, ରେଡ଼ିଓ ଓ ମହମବତୀ ( Candle sticks ) ରଖିପାରନ୍ତି ।

ସମୟ ସନ୍ଧ୍ୟା । ମଞ୍ଚର ପରିବେଶ ଅଲଗା । ଆବଦ୍ଧ ସଙ୍ଗୀତ ମଧ୍ୟ । ବାହାରୁ ପ୍ରବେଶ କଲେ ଜଣେ ସୁଦର୍ଶନ ଯୁବକ । ନିର୍ଲିପ୍ତ ପଟ୍ଟନାୟକ । ବୟସ ୩୦ । ଅଥଚ ମୁହଁରେ ଚପଳତାର ଛାପ । ହାତରେ ଖଣ୍ଡେ ଦାମିକା ଡାଏରୀ । ]

ନିର୍ଲିପ୍ତ ॥ ପ୍ରକାଶ… ପ୍ରକାଶ…

[ ପ୍ରବେଶ କଲା ଗ୍ରୁମ୍ସ୍ ପହଲମାନ୍ । ଅଦ୍ଭୁତ ବେଶ ଓ ହାତରେ ଛୁରୀ । ]

ଗ୍ରୁମସ୍ ॥ ଗରିବ ପିଲା ହାଜର୍ ଅବଧାନ୍ ।

ନିର୍ଲିପ୍ତ ॥ ତମେ… ମାନେ … ଏ ଘରର… ?

ଗ୍ରୁମସ୍ ॥ ଗ୍ରୁମ୍ସ୍ । କାହାକୁ ଖୋଜୁଛନ୍ତି ?

ନିର୍ଲିପ୍ତ ॥ ଏଇଟା ଶୋଭା ଘରତ ?

ଗ୍ରୁମସ୍ ॥ ହଜୁର ।

ନିର୍ଲିପ୍ତ ॥ ଟିକିଏ ଦେଖା କରି ହେବନ ?

ଗ୍ରୀମସ୍ || ଜରୁର୍ !! ( ଏହିକ୍ଷଣବେଳେ ଶେଲୀ ଆସିଛି )

ନିର୍ଲିପ୍ତ || ହାଏ... ଶେଲୀ !

ଶେଲୀ || ହାଏ...!

ନିର୍ଲିପ୍ତ || ଏଇ ଲୋକଟା ?

ଶେଲୀ || ଓଃ, ଡରିଗଲେ ? ଗ୍ରୀମ୍ସ୍ ପହଲମାନ୍ !

ଗ୍ରୀମସ୍ || ଆମର ଖାନଦାନୀ ହେଲା କୁସ୍ତି ଚଳେଇବା ହଜୁର୍ !!
( ପ୍ରସ୍ଥାନ )

ଶେଲୀ || ବସୁ ନାହାନ୍ତି ?

ନିର୍ଲିପ୍ତ || ସିଓର୍ !

ଶେଲୀ || କିଛି ମନେ କରିବେନି; ଆମର ଆଗରୁ କେଉଁଠି ଦେଖା...?

ନିର୍ଲିପ୍ତ || ବାଃ... Interesting ! ତ୍ରି' ସ୍ଥା ଭିତରେ ମତେ ଭୁଲି ଯାଇଛ ତାହାହେଲେ ?

ଶେଲୀ || ନା... ଠିକ୍ ଭୁଲି ଯାଇନି । ତେବେ...

ନିର୍ଲିପ୍ତ || ମନେ ପକାଇଲୁ ଦେଖି ?

ଶେଲୀ || 'ରଜନୀଗନ୍ଧା' ଫିଲ୍ମ ସୁଟିଂ ବେଳେ... କଲିକତାରେ...

ନିର୍ଲିପ୍ତ || ନା... । ପୁଣି ଥରେ ମନେ ପକା...

ଶେଲୀ || ମୁଁ ତୁମକୁ ଖୁବ୍ ଭଲ ଭାବରେ ଜାଣେ... ତୁମ ନାଁଟା ବି ମୋ ଜିଭ ଅଗରେ ଅଛି... ନା, ନା, ତୁମେ କୁହନି; ମୁଁ ମନେ ପକାଇ କହିବି । ଆମେ ଅନେକ କୋକାକୋଲା ପିଇଛେ । ନନ୍ଦନ କାନନରେ ବୋଟିଙ୍ଗ୍ କରିଛେ ।

ନିର୍ଲିପ୍ତ || ଝିଅମାନେ ଏତେ ଶୀଘ୍ର ଭୁଲିଯାଆନ୍ତି ବୋଲି ମୁଁ ବିଶ୍ୱାସ କରି ପାରୁନି ଶେଲୀ । ଆଚ୍ଛା, ଭୁବନେଶ୍ୱର ଦୁଇନମ୍ବରର ଗୋଟିଏ ବାହାଘର କଥା ମନେ ପଡୁଛି ? ସେତିକିବେଳେ ତମ ଘରଟା ଥାଏ, ବାପୁଜୀ ନଗରରେ; ଆଉ ତୁ ରବୀନ୍ଦ୍ର ମଣ୍ଡପରେ ନାଚ ଶିଖୁଥାଉ । ସେଇଠି... ନିର୍ଲିପ୍ତ ପଟ୍ଟନାୟକ ବୋଲି ଗୋଟିଏ ପିଲା ବାଣୀ ବିହାରରେ ପଢୁଥିଲା...

ଶେଲି ॥ ନା,··· ମାନେ··· ଖୋକାଭାଇ, ତମେ ? Please ମତେ କ୍ଷମା କରିଦିଅ । ତମେ ଖୁବ୍ ବଦଳି ଯାଇଛ କିନା ! ଆଦୌ ଚିହ୍ନି ହେଉନି !

ନିର୍ଲିପ୍ତ ॥ ଶେଲି !

ଶେଲି ॥ ତମର, ମାନେ, ମତେ ଏମିତି ପରିଚୟ ନ ଦେଇ ବେକାରୁ ଛରବାଟା କଣ ଉଚିତ୍ ହେଲା ଖୋକାଭାଇ ?

ନିର୍ଲିପ୍ତ ॥ ତୁ ମୋତେ ଚିହ୍ନି ପାରନ୍ତୁ. ଦୋଷ ତୋର···

ଶେଲି ॥ ସତରେ ଖୋକାଭାଇ; ତମେ ଖୁବ୍ ବଦଳି ଯାଇଛ । ମୁହଁରେ ଗୋଟାଏ ଗାମ୍ଭୀର୍ଯ୍ୟ । ଠିକ୍ ଗୋଟାଏ ବଡ଼ ଅଫିସର ଭଳି, ଓଃ··· ପାଖବର୍ଷ··· ନା ସାତବର୍ଷ ହେଲା । ଦେଖା ହେଉନି । ନୁହେଁ···?

ନିର୍ଲିପ୍ତ ॥ ଠିକ୍ ବଡ଼ ଅଫିସର ନୁହେଁ; ତେବେ··· Deputy Secretary । ଦେଢ଼ବର୍ଷ Collector ଥିଲି କୋରାପୁଟ୍‌ରେ । ତା'ପରେ ଭୁବନେଶ୍ୱର ବଦଳି;

ଶେଲି ॥ Oh, my God ! ଖୋକାଭାଇ, ମତେ ଖୁବ୍ ଖୁସି ଲାଗୁଛି; ମୁଁ ଗର୍ବ କରୁଛି··· ଆଜି ତମେ ମୋ' ଦୁଆରରେ ପାଦ ଦେଇଛ !

ନିର୍ଲିପ୍ତ ॥ ତୁ କାଲୁ ଓଡ଼ିଆ ଚଳଚିତ୍ର ଓ ନାଟକ ଜଗତର ମନୋପଲି ହୁଏଇନ୍ ସେ !

ଶେଲି ॥ ତା' ବୋଲି ତମ ପାଖରେ କଣ ବଦଳି ଯିବି ? ଆଚ୍ଛା ଖୋକା ଭାଇ; ମତେ ଏଇ ସାତବର୍ଷ ପରେ କେମିତି ଦେଖୁଛ ?

ନିର୍ଲିପ୍ତ ॥ ସତରେ··· ସାତବର୍ଷ···! ଆଜି ମୋର ମନେ ପଡ଼ୁଯାଉଛି, ସେଇ ବାଣୀବିହାରର ସ୍ୱପ୍ନମିଶା ଦିନ ଗୁଡ଼ିକ··· ଫିକା ଜହ୍ନ ଆଲୁଅରେ ଆମେ ଅନେକଥର ପକା ଉପରେ ବସି ଗପିଛେ । ଆମର Result ବାହାରି ନଥାଏ । ଆଉ ତୁ ଜାପାନ ଫେରନ୍ତା ଓଡ଼ିଶୀ ନୃତ୍ୟର ବିଖ୍ୟାତ ନାୟିକା । ଯେତେବେଳେ ମୁଁ I. A. S.ର ସ୍ୱପ୍ନ ଦେଖୁଥାଏ ।

ଶେଲୀ ॥ ମନେ ପଡ଼ୁଛି···। ମୁଁ କହୁ ତୁମକୁ ନେଇ ଗୋଟାଏ ଛବି ତ ବୋଇତରେ ପାଲ ଟାଣି ଜାଭା, ସୁମାତ୍ରା ଦ୍ୱୀପ ପର୍ଯ୍ୟନ୍ତ ଜଳ ଯାତ୍ରା କରୁଥିଲି··· ରୂପାର ଢେଉରେ ଅଗଣିତ ସଂଖ୍ୟବନ୍ଧା··· ଛକ ଛକ ସ୍ୱପ୍ନ। ତମ ମୁହଁ, ତମ ହସ, ତମ କଥା କହିବାର ଭଙ୍ଗୀ, ମତେ ସବୁବେଳେ ଖୁବ୍ ଭଲ ଲାଗୁଥିଲା··· ତାପରେ ତମେ କେବେ ହଠାତ୍ ଅଦୃଶ୍ୟ ହୋଇଗଲ···

ଦିଲିପ୍ ॥ ନା···। ତୁ ସେଦିନ ମତେ ଅପମାନ ଦେଇ ଆମ ଘରୁ ଚାଲିଗଲା ପରେ ମତେ ଖୁବ୍ ଏକଲା ଲାଗିଥିଲା। ତୋ ହାତ ତିଆରି ସେଇ ଗ୍ରେଟିଆ ପାନ, ତୋ ସ୍ନେହ, ତୋ ନମ୍ର ମଧୁର ବାଣୀ··· ସବୁ ମନେ ପଡ଼ୁଥିଲା···

ଶେଲୀ ॥ ମିଛ କଥା। ତାହା ହୋଇଥିଲେ, ଏଇ ସାତବର୍ଷ ଭିତରେ ତମକୁ ଦିନକ ପାଇଁ ସମୟ ମିଳି ନଥାନ୍ତା ?

ଦିଲିପ୍ ॥ ତୁ ଚାଲିଗଲା ପରେ ତୋତେ ଭୁଲିଯିବା ପାଇଁ ନିଜକୁ ଖୁବ୍ ବ୍ୟସ୍ତ ରଖିଲି। ଖାଲି ପଢ଼ା ଆଉ ପଢ଼ା··· ଗଦା ଗଦା, ବହି; I. A. S ପରୀକ୍ଷା। Result ବାହାରିଲା ଦିନ ଭାବିଥିଲି ତୋ' ସଙ୍ଗରେ ଦେଖା କରିବି ବୋଲି, କିନ୍ତୁ ତୋ' ଫଟୋ ସେତେବେଳେ Film fare, ରେ ବାହାରୁଥିଲା; Star & style ରେ ବାହାରୁଥିଲା···

ଶେଲୀ ॥ କାହିଁକି ଅପମାନ ଦେଉଛ କହିଲ ?

ଦିଲିପ୍ ॥ ଶେଲୀ, ସତ କହୁଛି। ଅନେକଥର ତୋ ସ୍ମୃତି ମୋତେ ବିବ୍ରତ କରିଛି। ତୋ କଥା ମୋର ମନେ ପଡ଼ିଲେ ଛାତି ପାଖରେ କିଛି ଗୋଟାଏ ଅଟକି ଗଲା ଭଳି ଲାଗେ। ଆଖିଗୁଡ଼ାକ ଲୁହରେ ଫାଟି ପଡ଼ିଲା ଭଳି ଲାଗେ···

ଶେଲୀ ॥ ( କଣ୍ଠରେ ଆର୍ଦ୍ରତା ) ତମେ ବଡ଼ ଲୋକ ହୋଇଚ। ଆହୁରି ଅନେକ ବଡ଼ ହୁଅ। ବାହା ସାହା ହେଲଣି ?

ଦିଲିପ୍ ॥ ଏଇ ଆସନ୍ତା ୮ ତାରିଖରେ ହେବାକୁ ଯାଉଛି।

ଶେଲୀ ॥ ଝିଅଟି କିଏ ? ମୁଁ ଜାଣିଛି ?

ନିର୍ଲିପ୍ତ ॥ ଜାଣିଥିବୁ ନିଶ୍ଚୟ । ପ୍ରଦ୍ୟୁମ୍ନ ଦାସ, ଭୁବନେଶ୍ୱରର M. P. ଦାସଙ୍କ ଝିଅ । Anthropologyରେ M. A. ପରେ ଦେବଦାସୀ ଉପରେ Ph. D. କରୁଛି ।

ଶେଲୀ ॥ ବାଃ; ତମପାଇଁ ମୋର ଅନେକ··· ···ଅନେକ ଶୁଭେଚ୍ଛା ରହିଲା···

ନିର୍ଲିପ୍ତ ॥ କ'ଣ ଶୁଭେଚ୍ଛା ଖାଲି ମୁହଁରୁ ବାହାରୁଛି··· ନା ଏଇଟା ମନର କଥା ?

ଶେଲୀ ॥ ଖୋକାଭାଇ ! ପଚାରୁଛ ଯେତେବେଳେ କହୁ ଦଉଚି ! ହଁ, ମୋର ଈର୍ଷା ହେଉଛି ।

ନିର୍ଲିପ୍ତ ॥ କାହିଁକି ?

ଶେଲୀ ॥ କାରଣ ଥାଇ ଈର୍ଷା କରାଯାଏ ?

ନିର୍ଲିପ୍ତ ॥ ଦିନେ ତୁ ମତେ ପ୍ରତ୍ୟାଖ୍ୟାନ କରିଥିଲୁ ।

ଶେଲୀ ॥ କାରଣ, ଅନ୍ୟ କାହା ସଙ୍ଗରେ ଯଦି କଥା ହେଲେ ତମେ ମୋତେ ସନ୍ଦେହ କରୁଥିଲ ।

ନିର୍ଲିପ୍ତ ॥ ଏଇ ସାତବର୍ଷ ଭିତରେ ମୁଁ କେବଳ ନିଜକୁ ତୋ ଆଗରେ ଯୋଗ୍ୟ ବୋଲି ପ୍ରମାଣିତ କରିବାର ଜିଦ୍ ନେଇ I. A. S. ପାଇଛି । ମୋର କ'ଣ ନାହିଁ ? ଗାଡ଼ି, ଘର, ଟଙ୍କା, ପାଓ୍ୱାର ସବୁ ଆସି ଯାଇଛି । ଯା' ପରେ ମ୍ୟାରେଜ୍ । ତୋର ମନେ ରଖିବା ଉଚିତ୍; ପ୍ରଦ୍ୟୁମ୍ନ କିଛି କମ୍ ଝିଅ ନୁହେଁ । ତାକୁ ପାଇବା ପାଇଁ ଟୋକାଙ୍କ ଭିତରେ Competition

ଶେଲୀ ॥ ଆଉ ସେଇଥିପାଇଁ ତମେ ମୋ ଆଗରେ ବାହାଦୁରି ଦେଖାଇବା ପାଇଁ ଆସିଛ ? ଖୋକା ଭାଇ ମନେ ରଖିଥା । ଆଜି ତମେ ଯେଉଁ ସାମାଜିକ ପ୍ରତିଷ୍ଠାର ଅଧିକାରୀ ସେ ସବୁର ମୂଳ ପ୍ରେରଣା ମୁଁ··· ଶେଲୀ ଦାସ ।

ନିର୍ଲିପ୍ତ ॥ ( ଆଘାତ ପାଇ ) ହୁଁଃ ତୋର ପୁଣି ମୋ' ମୁହଁ ଉପରେ ଅପମାନ ଦେଇ କଥା କହିବାର ସାହସ ହେଲାଣି···? ମୁଁ

ଭିଜିଥିଲି ତୋର ଯେଉଁ ଅଧଃ-ପତନ ହୋଇଛି ସେଥିପାଇଁ ତୁ ମୋତେ ଲଜ୍ଜାରେ···

ଶୈଳୀ ॥ ମୋ ବିଷୟରେ କିଛି ଖବର ରଖିଛ ତା' ହେଲେ ?

ନିର୍ଲିପ୍ତ ॥ ଆଖି ବୁଜି ଦୁଧ ପିଇଲେ ସମୁଦ୍ରଟା ମଧ୍ୟ ଧଳା ଦିଶିବ । କିନ୍ତୁ ତୋ ନାଁରେ ବାହାରେ ଅଜସ୍ର କୁତ୍ସା ।

ଶୈଳୀ ॥ ଖୋକା ଭାଇ, ଅଭିନୟ ମୋର ପ୍ରଫେଶନ୍ । ଏ କୁତ୍ସା ନେଇ ମୋତେ ବଞ୍ଚିବାକୁ ପଡ଼ିବ । ଆଉ ମୁଁ ଜାଣେ, ତମେ କୁତ୍ସା ଛଡ଼ା ଆଉ କିଛି ଶୁଣିବାପାଇଁ କାନକୁ ଅଭ୍ୟସ୍ତ କରିନା ।

ନିର୍ଲିପ୍ତ ॥ ଆମେ ବୋଧହୁଏ ସାତବର୍ଷ ତଳର ସେଇ ପୁରୁଣା କାଳକୁ ଭିତରକୁ ଟାଣିହୋଇ ଯାଉଛେ ? ତୁ ଯଦି ଚାହୁଁଛୁ··· ମୁଁ ବର୍ତ୍ତମାନ ଚାଲିଯିବା ପାଇଁ ପ୍ରସ୍ତୁତ । ( ଯିବାକୁ ବାହାରନ୍ତି )

ଶୈଳୀ ॥ କିଏ କେତେ ଚାଲିଗଲେ ଖୋକା ଭାଇ, ତମ ଭଳି; ଅନେକ··· ଅନେକ । ବର୍ଷରୁ ମାସ, ମାସରୁ ଦିନ, ଦିନରୁ ଘଣ୍ଟା ଓ ମିନଟ୍ ଚାଲିଗଲା ପରି··· ଅନେକ ଆସି ଅନେକ ଗଲେ··· କେଇ ପଦ କଥା··· କେଇ ଖଣ୍ଡ ଅଶ୍ରୁ ଅଙ୍କି··· ଗଲାବେଳେ କାହା ଆଖି ସଜଳ ହୋଇ ଉଠେ··· ଆଉ କିଏ କହେ : 'ଭୁଲିବନି··· ଚିଠି ଦେବ', ଆଉ ତମ ଭଳି କିଏ ପାହାଚ ପରେ ପାହାଚ ଅତିକ୍ରମ କରି··· ସେଇ ଦିଗ୍‌ବଳୟ ସେପାରିରେ···

ନିର୍ଲିପ୍ତ ॥ ମନ ଖରାପ କଲୁ ?

ଶୈଳୀ ॥ ନା—

ନିର୍ଲିପ୍ତ ॥ ଭୁଲ୍ ବୁଝିଲୁ ?

ଶୈଳୀ ॥ ନା—

ନିର୍ଲିପ୍ତ ॥ ଆଜିକାଲି କେମିତି ଅଛୁ ? ବାପା··· କୋଉଠି ?

ଶୈଳୀ ॥ ବାପା ସରକାରୀ ଟଙ୍କା ଖାଇ ଫେରାର ହେଲେ । ମା' ଲିକୋମିଆରେ ମଲା, ଭାଇ Americaରୁ ଫେରିଲାନି,

ଆଇଲିନ୍ ଭାଉଜଙ୍କୁ ନେଇ ସେଇଠି ସେଟଲ୍ କରିଗଲା, ତାଙ୍କ ଅପାର ଆଗ୍ରହ ନେବାକୁ ମୋର ଇଚ୍ଛା ନଥିଲା, ଏ ଲାଇନକୁ ଆସିଗଲି । ତମଭଳି ଲୋକେ କହୁଛନ୍ତି ପତିତା—

ନିର୍ଲିପ୍ତ ॥ ଚାଲ, ଭୁବନେଶ୍ୱର ଫିରୁ । ମୋ କ୍ୱାର୍ଟର୍ସରେ ଦୁଇଦିନ ରହି ଚାଲି ଆସିବୁ ।

ଶେଲୀ ॥ କ'ଣ ଲାଭ ?

ନିର୍ଲିପ୍ତ ॥ ତୋ' ସାଙ୍ଗରେ ଅନେକ କଥା ଥିଲା ।

ଶେଲୀ ॥ ଏଇଠି କହୁନ ? ( ଟିକିଏ କଟେଇ ଚାହିଁଛି ) ତମେ ସୁଟ୍ ଭିତରେ ମତେ ଖୁବ୍ ସୁନ୍ଦର ଦେଖାଯାଉଛ !

ନିର୍ଲିପ୍ତ ॥ ମୁଁ Secretariatର youngest Deputy Secretary ଯେ—

ଶେଲୀ ॥ କ'ଣ ? ଲେଡ଼ି-କିଲର୍ ? ( ପାଖକୁ ଲାଗି ଆସି ) ଖୋକା ଭାଇ, ତମେ ସେଇ ପିଲା କଥା ସବୁ ମନେ ରଖିଚ ?

ନିର୍ଲିପ୍ତ ॥ ତତେ ଦେଖିଲେ···

ଶେଲୀ ॥ ଅଟକି ଗଲ ଯେ ? କଣ କହିବାକୁ ଥିଲା ? ମତେ ଏଇ ସାତ ବର୍ଷ ଭିତରେ କେମିତି ଦେଖୁଚ ?

ନିର୍ଲିପ୍ତ ॥ ତୋ' ଅଣ୍ଟା ପାଖରେ ଟିକିଏ ଫ୍ୟାଟ୍ ଜମି ଯାଇଛି । ତଥାପି··· ବେଶ୍ ଚଳିବ ।

ଶେଲୀ ॥ ଅଭଦ୍ର, ଆଇ. ଏ. ଏସ୍. ପାଇଲା ପରେ ବି ତମର ଦୁଷ୍ଟାମୀ ଗଲାନି ।

[ ଦୁହେଁ ହସିଲେ ]

ନିର୍ଲିପ୍ତ ॥ ତତେ ଦେଖି ଆଗଭଳି ମୁଁ ଆଉ emotional ହୋଇ ପାରୁନି ।

ଶେଲୀ ॥ ବିକୃତ କ୍ଷୁଧା-ଶୁଣିଚ ତ··· ସେଇଥି ପାଇଁ ।

ନିର୍ଲିପ୍ତ ॥ ନା, ମୋର ମୁଡ୍ ଭଲ ନାହିଁ । ତୁ ତୋର ଗୋପନୀୟତାକୁ ବନ୍ଦୀ କରୁଚୁ ।

ଶେଲୀ ॥ ସେଇ ସାତ ବର୍ଷ ତଳେ ତମ ଆଗରେ ମୋର ଗୋପନୀୟତାକୁ ପ୍ରଥମେ ଉନ୍ମୁକ୍ତ କରିଥିଲି ଖୋକା ଭାଇ । ତମକୁ ମୁଁ ସମ୍ପୂର୍ଣ୍ଣ ଗ୍ରାସ କରି ଦେଇଥିଲି । ତମେ ଜାଣ ଖୋକା ଭାଇ ? ତମ ଆଗରେ ନିଜକୁ ଖୋଲି ଦେଲାବେଳେ ଦିନେ ହଠାତ୍ ମୁଁ ଆବିଷ୍କାର କଲି, ମୁଁ ତମ ଭିତରଟାକୁ ଖୋଜୁଚି ମୋ ଭିତରେ । ପୁରୁଷମାନଙ୍କୁ ମୁଁ ସେଇ ଦିନଠୁ ଚିହ୍ନିଚି ।

ନିର୍ଲିପ୍ତ ॥ ଅନେକ ପୁରୁଷଙ୍କୁ ଚିହ୍ନିଲୁଣି ବୋଧହୁଏ ?

ଶେଲୀ ॥ ଘୃଣା ହେଉଚି ?

ନିର୍ଲିପ୍ତ ॥ ହଁ, ଏବଂ ବର୍ତ୍ତମାନ, ଏଇ ମୁହୂର୍ତ୍ତରେ ଏଇଠୁ ଚାଲିଯିବା ପାଇଁ ଇଚ୍ଛା ହେଉଚି ।

ଶେଲୀ ॥ କଣ ଗୋଟାଏ କହିବ ବୋଲି କହୁଥିଲ ?

ନିର୍ଲିପ୍ତ ॥ ତୁ ପରଂ ଭୁବନେଶ୍ୱର ଆସ, ମୋର ଏଇଠି ରହିବାକୁ ଇଚ୍ଛା ହଉନି ।

ଶେଲୀ ॥ ଠିକ୍ ଖୋକା ଭାଇ; ତମେ ଏଇଠିକି ରହିବା ପାଇଁ ଆସିନା, ଯିବ ନିଶ୍ଚୟ । ଏଇ ପରା ହାତରୁ ଚା' କପେ ପିଇଦେଇ ଯାଅ, ନା ଆପତ୍ତି ଅଛି ?

ନିର୍ଲିପ୍ତ ॥ ନା, ମୁଁ ତୋ ହାତର ଚା' ନିଶ୍ଚୟ ପିଇବି ।

ଶେଲୀ ॥ ( ଭିତରକୁ ଚାହିଁ ) ରୁସ୍ତମ ! ରୁସ୍ତମ ପହଲମାନ୍ !

ରୁସ୍ତମ ॥ ( ଷ୍ଟିଚ୍ଛିଙ୍ଗ ବାହାର କରି ) ହାଜିର୍ ଦେଲି । ଏଇଥର କାହା ବେକରେ ଛୁରି ଚାଲିବ ?

ଶେଲୀ ॥ ଦରକାର ହେଲେ କହିବି । ଦୁଇ କପ୍ ଚା'...

ରୁସ୍ତମ ॥ ଏକ୍ ମିନିଟ୍ ଭିତରେ ଆସୁଚି...

ଶେଲୀ ॥ ଶୁଣ !

ରୁସ୍ତମ ॥ ହଜୁର୍ !

ଶେଲୀ ॥ ଭିତରେ ନାଟ୍ୟକାର ବସିଛନ୍ତି ?

ରୁସ୍ତମ ॥ ହଜୁର୍ ।

ଶେଳୀ ।। ଲେଖା ଶୁଣିଛ ?

ସୁମନ୍ତ ।। ଶୁଣିଛି ।

ଶେଳୀ ।। ଗୋଟାଏ ଜପ୍‌ ତାବିଜ୍‌ ବି ଦେଇ ଦେବୁ । ( ସୁମନ୍ତ ଚାଲିଗଲେ )

ନିର୍ଲିପ୍ତ ।। ଏଇ ତାବିଜଟି କଣ ?

ଶେଳୀ ।। ସୁନ୍ଦରୀ ଆଉ ବୟସ ଥିବା ଏକଲା ନାରୀମାନଙ୍କ ପାଖରେ ଏଇଥିରୁ ଗୋଟିଏ ଗୋଟିଏ ବଣ୍ଣୁ ତାବିଜ ଆବଶ୍ୟକ ହୁଅନ୍ତି । ଆତ୍ମରକ୍ଷା ପାଇଁ…

ନିର୍ଲିପ୍ତ ।। ଗୁଣ୍ଡା ପୋଷିଛ ?

ଶେଳୀ ।। ତମ ଭଳି ବାଘ-ଭାଲୁଙ୍କଠୁ ରକ୍ଷା ପାଇବା ପାଇଁ ।

ନିର୍ଲିପ୍ତ ।। ନାଟ୍ୟକାରଟି କିଏ ?

ଶେଳୀ ।। ପରିଚୟ କରେଇ ଦେବି, Bed roomରେ ବସିଛନ୍ତି ।

ନିର୍ଲିପ୍ତ ।। ଏକ୍‌ବାରେ Bed roomରେ ?

ଶେଳୀ ।। ଆଜି କାଲି ମୋ' Bed roomରେ କେବଳ ନାଟ୍ୟକାରଙ୍କର ଅଧିକାର !

ନିର୍ଲିପ୍ତ ।। "ଆତ୍ମଲିପି" ଲେଖା ଚାଲିଛି ?

ଶେଳୀ ।। ତମେ କେମିତି ଜାଣିଲ ?

ନିର୍ଲିପ୍ତ ।। ଖବର କାଗଜରୁ । ନାଟ୍ୟ ଓ ଚିତ୍ରାଭିନେତ୍ରୀ ଶେଳୀ ଦାସଙ୍କ କାହାଣୀ ଉପରେ ଆଧାରିତ ବିଖ୍ୟାତ ନାଟକ… ଖବର କାଗଜରେ ତୋ' ନାଁ ଖୁବ୍‌ ବାହାରୁଛି…

ଶେଳୀ ।। ଦିନକୁ ଶହେ ଦେଢ଼ଶହ ଚିଠି… ଖାଲି ଫ୍ୟାନ୍‌ମାନଙ୍କ ପାଖରୁ । ଆଉ କିଛି ଦିନ ପରେ ଗୋଟାଏ Private Secretary ରଖିବାକୁ ପଡ଼ିବ !

ନିର୍ଲିପ୍ତ ।। ମୁଁ ସେଇଥିପାଇଁ ବ୍ୟସ୍ତ ହେଇ ପଡ଼ିଛି…

ଶେଳୀ ।। ବ୍ୟସ୍ତ ? କାହିଁକି ? ମୋ' ପାଇଁ ?

ନିର୍ଲିପ୍ତ ।। ତୋ' ଆତ୍ମଲିପି କେଉଁଠୁ ଆରମ୍ଭ ହେଉଛି ?

ଶେଲି || ( ଆଶ୍ଚର୍ଯ୍ୟ ହୋଇ ) ମୋ' ଜନ୍ମରୁ··· ମୁଁ ଶେଲି ଦାସ···
'ଏ ନାଟକର ହିରୋଇନ୍' ଏଇଠୁ···

ନିର୍ଲିପ୍ତ || ନାଟକରେ କ'ଣ ସବୁ କଥା ଲେଖାଯିବ ?

ଶେଲି || ସବୁ କଥା ମୋର ଯାହା ମନେ ପଡ଼ିବ···

ନିର୍ଲିପ୍ତ || ସେ ନାଟକରେ ମୁଁ କ'ଣ ଗୋଟାଏ ଚରିତ୍ର ?

ଶେଲି || ଯିଓର ! ଏଇଥିରେ ସନ୍ଦେହ ଅଛି ? ତମେ ଯେ ଖୋକା
ଭାଇ ମୋ' ପ୍ରଥମ ଯୌବନର ପ୍ରଜାପତି !!

ନିର୍ଲିପ୍ତ || ଶେଲି ! ମୋ' ନାଁଟାକୁ ତମ ନାଟକର କାହାଣୀରୁ ବାଦ୍
ଦେବାକୁ ପଡ଼ିବ ।

ଶେଲି || କିନ୍ତୁ ଖୋକା ଭାଇ ! ତମକୁ ଛାଡ଼ି 'ଆତ୍ମଲିପି' ଲେଖା ହବ
କେମିତି ?

ନିର୍ଲିପ୍ତ || ତଥାପି ଛାଡ଼ିବାକୁ ପଡ଼ିବ, ଏଇଟା ମୋ ଆଦେଶ ।

ଶେଲି || କିନ୍ତୁ, ତା ଯେ ଆଦୌ ସମ୍ଭବ ନୁହେଁ ଖୋକା ଭାଇ···!
ତମେ ମୋର ଆଜିର ଆବସ୍ଥାର ପ୍ରଥମ ଉଦ୍‌ଘାଟକ ।
ଆଜି ଯଦି ଶେଲି ଦାସ୍ ଏଇ ସମାଜରେ ଗୋଟାଏ ସ୍ଖଳିତା
ନାରୀର ଆସନ ପାଇଥାଏ, ତାହା ତମରି ପାଇଁ । ଯଦି
ଦେହଟିରେ ପାଗଳଙ୍କ ଠାରୁ ଶତି ଅସୁଥାଏ, ତାହା ତୁମରି
ପାଇଁ··· । ତମର ମୋର ଗୋଟାଏ ଦ'ଟା ଯିନ୍ ନିଶ୍ଚୟ
ରହିବ··· ନିଶ୍ଚୟ··· ( ହସିଲା )

ନିର୍ଲିପ୍ତ || ଦେଖ ଶେଲି, ମୁଁ ଅଛା କରୁନ । ଯିରଅସ୍ଲି କହୁଛି ।

ଶେଲି || ନାଟ୍ୟକାର ମୋର କାହାଣୀ ଲେଖିବା ପାଇଁ ଆଗ୍ରହୀ ।
ନିର୍ଦ୍ଦେଶକ ରବି ଭାଇ ମୋ କାହାଣୀରେ ବଳିଷ୍ଠ ନିର୍ଦ୍ଦେଶନା
ଦେବେ··· ପ୍ରଯୋଜକ ମୋ ପାଇଁ ପାଗଳ । ମୁଁ ଏ
ସୁଯୋଗ ଛାଡ଼ିବାର ପାତ୍ରୀ ଆଦୌ ନୁହେଁ ।

ନିର୍ଲିପ୍ତ || ସୁଯୋଗ ? ଏଇଟାକୁ ତୁ ସୁଯୋଗ ବୋଲି କହୁଛୁ ଶେଲି ?
ନିଜର ବ୍ୟକ୍ତିଗତ କଥା ଗୁଡ଼ାକ ହଜାର ହଜାର ଦର୍ଶକଙ୍କ

ଆଗରେ ଦେଖାଇବା ଗୋଟାଏ ସୁଯୋଗ ? ଏ ବୁଢ଼ାକୁ ମୁଁ ଅଧଃପତନ ବୋଲି କହିବ ।

ଶେଲି ।। ତମ ଆଗରେ ମୁଁ ଗୋଟାଏ ଚରିତ୍ରହୀନା ହୋଇପାରେ, କିନ୍ତୁ ଖୋକା ଭାଇ, ଲୋକେ ମୋତେ ବି ଖାତିର କରନ୍ତି ।

ନିର୍ଲିପ୍ତ ।। ମୁଁ କ'ଣ ମନା କଲି ? ହୋଇପାରେ, ସେଥିପାଇଁ ତୁ ପ୍ରଚୁର ଟଙ୍କା ପାଉଥିବୁ । ମୋ କହିବା କଥା ହେଲା ପଇସା ପାଇଁ ଯଦି ତୋ ଆତ୍ମଲିପି ନାଟକକୁ ଦେଉଥାଉ ତା' ହେଲେ ମୁଁ ତାର ଦ୍ବିଗୁଣ ଦେବାକୁ ପ୍ରସ୍ତୁତ ।

ଶେଲି ।। ମୋତେ ଦ୍ବିଗୁଣ ? ତା' ହେଲେ ତୁମେ ମୋତେ ଟଙ୍କା ଦେଖାଇ କିଣିବା ପାଇଁ ଆସିଛ ଆଜି ?

ନିର୍ଲିପ୍ତ ।। ଏମିତି ଅପମାନ ଦେଇ ସେଦିନ ମୋତେ ଫେରାଇ ଦେଇଥିଲୁ— ସବୁ ଯାଇଥିଲା । କାରଣ ମୁଁ କିଛି ଦେଖି ନଥିଲା । ଆଜି ମୋର ପାଳି ।

ଶେଲି ।। ଆଶ୍ଚର୍ଯ୍ୟ... ଖୋକା ଭାଇ ତମେ କ'ଣ କହୁଛ ?

ନିର୍ଲିପ୍ତ ।। ତୁ ମତେ ଏଣିକି "ଖୋକା ଭାଇ" ବୋଲି ଡାକି ପାରିବୁନି ।

ଶେଲି ।। ଠିକ୍ ଅଛି । ସେ ଅଧିକାର ତମେ ଚାହିଁଲେ ଫେରାଇ ନେଇପାର ।

ନିର୍ଲିପ୍ତ ।। ମୁଁ I. A. S. ପାଇଛି ଓ ଅଫିସରଟେ ହୋଇଛି ବୋଲି ତୁ' ମୋ ଉପରେ ଈର୍ଷା କରୁଛୁ ।

ଶେଲି ।। ମୋ ଭିତରେ ତମେ ଈର୍ଷାର ଉଦ୍ରେକ କରୁଛ । ଘୃଣା ଉଦ୍ରେକ କରୁଛ... ତମେ ଏବେ ଗ୍ରେଟଲେକ ଖୋକା ଭାଇ ? ମୋ' ଆତ୍ମଲିପିରେ ତମ ଚରିତ୍ର ରହିଲେ ତମ M. P. ଶ୍ବଶୁର ଖରାପ ଭାବିବେ, ଅଫିସର ମହଲରେ ତମ Prestige ଗୁଳିଯିବ ଆଉ ତମେ ପ୍ରତିଧ୍ବନି ଦାସକୁ ବାଦ୍ଧା ହୋଇ ପାରିବନି, ଏୟାତ ?

ନିର୍ଲିପ୍ତ ।। ହଁ ସଂକ୍ଷେପରେ ସେୟା ।

ଶେଲ୍ଲୀ || ଖୋକା ଭାଇ ! ଅଭୂତପୂର୍ବ ମୋର ପ୍ରଫେସନ । ମୁଁ ଚାହେଁ ମୋ ନାଁ ବାହାରେ ପ୍ରଚାରିତ ହେଉ. ମୋର ଫ୍ୟାନ୍ ସଂଖ୍ୟା ଦେଢ଼ହେବୁ ଦେଢ଼ଲକ୍ଷ ହେଉ, ଏଇ ନାଟକଟା ହେବ ମୋର Publicity.

ନିର୍ଲିପ୍ତ || ଭଲରେ ଭଲରେ ନ ଶୁଣିଲେ ମୁଁ ମୋର କ୍ଷମତା ପ୍ରୟୋଗ କରିବି ।

ଶେଲ୍ଲୀ || ଓଃ... ତମେ Deputy Secretary କ୍ଷମତା ପ୍ରୟୋଗ କରିବ ? କର ।

[ ଏହିକିବେଳେ ନାଟ୍ୟକାର ଭିତରୁ ଆସିଲେ ]

ନାଟ୍ୟକାର || କ'ଣ ହେଉଚି ଶେଲ୍ଲୀ ?

ଶେଲ୍ଲୀ || ଖୋକା ଭାଇ ଇଏ ହେଉଚନ୍ତି 'ଆମ୍ଭଲିପି' ନାଟକର ନାଟ୍ୟକାର । ଏବଂ ( ନାଟ୍ୟକାରଙ୍କୁ ଦେଖାଇ ) ଇଏ ଡେପୁଟୀ ସେକ୍ରେଟାରୀ, ଆଇ. ଏ. ଏସ୍ ନିର୍ଲିପ୍ତ ପଟ୍ଟନାୟକ !

ନିର୍ଲିପ୍ତ || ହାଲୋ !

ନାଟ୍ୟକାର || ଗ୍ଲାଡ୍ ଟୁ ମିଟ୍ ୟୁ !

ଶେଲ୍ଲୀ || ତମେ ଗପୁଥାଅ... ମୁଁ ଶାଢ଼ିଟା ବଦଳେଇ ଆସୁଚି ।

( ଯାଉଛୁ )

ନିର୍ଲିପ୍ତ || ଆଗରୁ ଆପଣଙ୍କ ନାଁ ଶୁଣିଥିଲି ।

ନାଟ୍ୟକାର || ( ବିଦ୍ରୂପର ସ୍ୱର ) ଧନ୍ୟ ହେଲି । କୋଉଠୁ ଶୁଣିଥିଲେ ?

ନିର୍ଲିପ୍ତ || ଖବର କାଗଜରୁ । ଆପଣଙ୍କର ଦୁଇଖଣ୍ଡି ବହି ଇଂରେଜୀରେ ଅନୁବାଦ ହେଉଚି ।

ନାଟ୍ୟକାର || ସବୁ ଅନୁବାଦ ସବୁ ଇଂରେଜୀ ଲେଖା ତ ଆପଣମାନଙ୍କର । ସରକାରୀ ସାହାଯ୍ୟ ଥିଲେ ଯେ କୌଣସି ଅସମ୍ଭବକୁ ସମ୍ଭବ କରନ୍ତୁ ଏ... ସାହିତ୍ୟ ନ ଜାଣି ଆପଣ ସାହିତ୍ୟ ଆସରର ସଭାପତି... ଟୁର୍ କରିବା ପାଇଁ ସରକାରୀ ଗ୍ରାଣ୍ଟ... ମାଗଣାରେ Continent ବୁଲି ଆସିବେ...

ନିର୍ଲିପ୍ତ ॥ ତା'ତ ହେବା କଥା । ଏଥିରେ ଆପଣଙ୍କର ଈର୍ଷା ହେଉଚ କାହିଁକି ? ଆମେ ନିଜେତ ସରକାର । ରାଜନୈତିକ ନଦୀରେ ଅନେକ ପାଣି ଆସିବ, ଅନେକ ପାଣି ବହିଯିବ; କିନ୍ତୁ ଆମେ ସେମିତି କ୍ଷମତାରେ ଥାଇ ଦେଶ ଚଳେଇବୁ ।

ନାଟ୍ୟକାର ॥ ମୋର କୋଉ ବହି ଦେଖି ନାହାନ୍ତି ?

ନିର୍ଲିପ୍ତ ॥ ମୁଁ ଅନେକ ଦିନ ଓଡ଼ିଶା ବାହାରେ ଥିଲି । କିଛି ନୂଆ ଲେଖା ?

ନାଟ୍ୟକାର ॥ ଏମିତି ଚାଲିଛି ।

ନିର୍ଲିପ୍ତ ॥ ଶୁଣିଲି 'ଆତ୍ମଲିପି' ବୋଲି ଗୋଟାଏ ନାଟକ ଚାଲିଛି ?

ନାଟ୍ୟକାର ॥ ହିଁ…'ଆତ୍ମଲିପି' ! ଆପଣଙ୍କ ନାଁ ଟା ନିର୍ଲିପ୍ତ, ପଡ଼ନାୟକ ତ ?

ନିର୍ଲିପ୍ତ ॥ ୟେସ । କେତେ ଟଙ୍କା ମିଳୁଛି ଏଇ ଲେଖା ପାଇଁ ?

ନାଟ୍ୟକାର ॥ ଓଡ଼ିଶାରେ ନାଟକ ଲେଖକଙ୍କୁ କ'ଣ ପଇସା ମିଳେ ? ପଇସା ମାଗିଲେ କଳା ପରିଷଦ ସମ୍ପାଦକମାନେ କହନ୍ତି 'ତମ ଲେଖକ ମାନଙ୍କୁ ଆମେ ଓଡ଼ିଶା ସାରା ପରିଚିତ କରେଇ ଦେଉଛୁ' ସେଇ ଯଥେଷ୍ଟ । ପଇସା ତମର କ'ଣ ହେବ ? ଆମର ସିନା ଦରକାର ? ( ହସି ହସି ) ଭଦ୍ରଲୋକ ଗତ ପନ୍ଦର ବର୍ଷ ଧରି ଅନୁଷ୍ଠାନର ଅନବାଚିତ, ମନକୁ ମନ ହୋଇଥିବା ଜବରଦସ୍ତ ସେକ୍ରେଟାରୀ…

ନିର୍ଲିପ୍ତ ॥ ( ହସି ହସି ) ଫ୍ରି-ଲାନ୍‌ସ୍ କରୁଛନ୍ତି ନା' ଅନ୍ୟ କିଛି ଚାକିରୀ ଅଛି ?

ନାଟ୍ୟକାର ॥ ଓଡ଼ିଶାରେ ଫ୍ରି-ଲାନ୍‌ସ୍ ? ଗୋଟାଏ ଦୁରାଶା । ଗୋଟାଏ ପ୍ରାଇଭେଟ୍ କଲେଜରେ ଅଧ୍ୟାପନା କରୁଛି ।

ନିର୍ଲିପ୍ତ ॥ ମିଃ… ମାଧବ ଦାସଙ୍କ ନାଁ ଶୁଣିଛନ୍ତି ? ଦିଲ୍ଲୀର ଏକ ମାତ୍ର ଓଡ଼ିଆ ଇଣ୍ଡଷ୍ଟ୍ରିଆଲିଷ୍ଟ୍, ଏମ୍. ପି. ଅଛନ୍ତି । ମୋ' ସାଙ୍ଗ ଶ୍ୱଶୁର, କହୁଥିଲେ ଓଡ଼ିଆରେ ଗୋଟାଏ ବଡ଼ଟ ସରକାରୀ ପତ୍ରିକା ବାହାରୁଛି ସେଇଠୁ, ପ୍ରାୟ ତିନିହଜାର ଟଙ୍କା ଦରମା, ସେମାନେ ଜଣେ ଟ୍ୟାଲେଣ୍ଟେଡ୍ ଲେଖକ ଖୋଜୁଛନ୍ତି,

ଖବୁଡ ତାଙ୍କୁ ତମ ନାଁଟା··· ଆଉ ମିନ୍ ଆପଣଙ୍କ ନାଁଟା କହୁବ ।

ନାଟ୍ୟକାର ॥ ( ଉତ୍ସାହିତ ହେଲା ଭଳି ଅଭିନୟ କରି ) ଆଚ୍ଛା ! ସୁନ୍ଦର ପୋଷ୍ଟଟାଏ ତ !

ନିର୍ଲିପ୍ତ ॥ ମୁଁ ଖବୁଡ, ଚେଷ୍ଟା କଲେ ଆପଣଙ୍କ ଭଳି ଜଣେ talented ନାଟ୍ୟକାର ସେ postଟା ପାଇପିବେ ।

ନାଟ୍ୟକାର ॥ ବଢିଆ ହୁଅନ୍ତା ।

ନିର୍ଲିପ୍ତ ॥ ମି. ଦାସ୍ ବର୍ତ୍ତମାନ ଭୁବନେଶ୍ୱର ଆସିଛନ୍ତି । ତାଙ୍କର ସମସ୍ତ ସହର୍ତ ଅନେକ କମ୍, କିନ୍ତୁ ଆପଣଙ୍କ ସହିତ ତାଙ୍କର ଗୋଟାଏ appointment ଠିକ୍ କରି ଦେଇପାରେ ! କିନ୍ତୁ ଘଟଣାଟା ଆପଣ confidential ରଖିବେ··· କାହାକୁ କହିବେନି ।

ନାଟ୍ୟକାର ॥ ଆପଣ ସେ ବିଷୟରେ ନିଶ୍ଚିତ ରୁହନ୍ତୁ ମି: ପଟ୍ଟନାୟକ । ମୁଁ ଆପଣଙ୍କ ପାଖରେ କୃତଜ୍ଞ ରହିବି··· ( ଟିକିଏ ରହି ) କିଛି ମନେ କରିବେନି, ଗୋଟାଏ କଥା ପଚାରିବି ?

ନିର୍ଲିପ୍ତ ॥ ହିଁ··· ହିଁ, ପଚାରନ୍ତୁ ।

ନାଟ୍ୟକାର ॥ ଭାବିବେନି ଲେଖକ ଗୁଡ଼ାକ ଏମିତି ଚୁଟି ମାରିଲା ଭଳିଆ କଥା କୁହନ୍ତି ବୋଲି···

ନିର୍ଲିପ୍ତ ॥ ସେମିତି ସିଧା ସଳଖ ସତ କଥା କହିବା ଲୋକଙ୍କୁ ମୁଁ ଖୁବ୍ ଭଲ ପାଏ ।

ନାଟ୍ୟକାର ॥ ହେଇପାରେ, ଆପଣଙ୍କର ଭଲ ପାଇବା ସାଙ୍ଗେ କିଛି ଯାଏ ଆସେ ନାହିଁ··· ତେବେ ଗୋଟାଏ କଥା··· (ତୀକ୍ଷ୍ଣ ସ୍ୱରରେ) ଆପଣ ମତେ ଏ ସୁଯୋଗଟା ଦେବାକୁ ଏତେ ଆଗ୍ରହ ପ୍ରକାଶ କରୁଛନ୍ତି କାହିଁକି ? ଏଇଟା ବୋଧହୁଏ ଆମର ପ୍ରଥମ ଦେଖା !!

ନିର୍ଲିପ୍ତ ॥ ସୁଯୋଗଟା ମୋ ହାତରେ ନାହିଁଯେ ଦେଇଦେବି, ମୁଁ ଖାଲି ଗୋଟାଏ ଚେଷ୍ଟା କରୁଥିଲି ।

ନାଟ୍ୟକାର ।। କାହିଁକି ? ମୋ' କ୍ୟାରିଅର୍ ପାଇଁ ଆପଣ ଏତେ କଷ୍ଟ ସ୍ୱୀକାର କରିବେ କାହିଁକି ? ସେଇ କଥା ପଚାରୁଥିଲି ।

ନିର୍ଲିପ୍ତ ।। ଆପଣ ଶେଲିର ଅନ୍ତରଙ୍ଗ । ଶେଲି ଆପଣଙ୍କର ପ୍ରଶଂସା କରେ ।

ନାଟ୍ୟକାର ।। ସେଇଥିରେ କଣ୍ଟୁ ଯାଏ ଆସେନା, ଆପଣ ମୋ'ଠୁ କ'ଣ ଚାହାନ୍ତି ?

ନିର୍ଲିପ୍ତ ।। ଶୁଣିଲି, ଶେଲିର ଜୀବନକୁ ନେଇ ଏଇଠି ଗୋଟାଏ ନାଟକ ଲେଖା ହଉଚି, ମୁଁ ଚାହେଁ ସେଇଟା ଆପଣ ଲେଖନ୍ତୁ ନାହିଁ ।

ନାଟ୍ୟକାର ।। ସେଇଟା ମୁଁ ଲେଖିବି ନାହିଁ ? କାହିଁକି ?

ନିର୍ଲିପ୍ତ ।। ଶେଲିକୁ ପଚାରିବ ।

( ଶେଲି ଶାଢି ବଦଳେଇ ପହଞ୍ଚୁଛି )

ଶେଲି ।। କେମିତି ଚାଲିଛି ? ତମ ଦୁହିଁଙ୍କର କଥାବାର୍ତ୍ତା ଜମିଲା ନା ନାହିଁ ?

ନାଟ୍ୟକାର ।। ତମର ପ୍ରେମିକ ମତେ ଲୋଭ ଦେଖାଇ ନାଟକଟା ବନ୍ଦ କରିଦେବା ପାଇଁ ପ୍ରସ୍ତାବ ବାଢ଼ୁଥିଲେ ।

ନିର୍ଲିପ୍ତ ।। ( ତୀବ୍ର ଭାବରେ ) ନା, ମୋଟେ ନୁହେଁ, ମୁଁ ଶେଲି ତୋ ପାଇଁ ଭୀଷଣ ଦୁଃଖିତ··· ଏମିତି ଗୁଡ଼ାଏ ଇତର ଲୋକଙ୍କୁ ତୁ' ଘରେ ପୂରେଇଚୁ !

ଶେଲି ।। ( ନାଟ୍ୟକାରଙ୍କୁ ) ତମେ ଖୋଭାଭାଇ ସାଙ୍ଗରେ ଫାଜିଲାମି କରିଚଟି ?

ନାଟ୍ୟକାର ।। ମୋଟେ ନୁହେଁ, ସତକଥା କୁହାଯାଇଚି ।

ଶେଲି ।। ତମେ ଖବରପ ଭାବିଲକି ଖୋକା ଭାଇ ? ନାଟ୍ୟକାର ପ୍ରାୟ ତମ କଥା ସବୁ ଜାଣନ୍ତି··· ଅବଶ୍ୟ ବାଣୀବିହାରର ରାଜନୀତି ବିଜ୍ଞାନ ଶ୍ରେଣୀର ଛାତ୍ର ହିସାବରେ··· ଆଇ. ଏ. ଏସ୍. ଅଫିସର ଭାବରେ ନୁହେଁ ।

ନିର୍ଲିପ୍ତ ।। ଶେଲି ! ତୋର ଏକ ପୁରୁଣା ବନ୍ଧୁ ହିସାବରେ ମୁଁ ତତେ ଅନୁରୋଧ କରୁଛି ଏଇ ଥାର୍ଡକ୍ଲାସ ଲେଖକ ନାଟ୍ୟକାର ପାଖରେ

ନିଜର ଏକାନ୍ତ ଗୋପନୀୟ କାହାଣୀ ଗୁଡ଼ାକ ଖୋଲି କହନ୍ତି ।

ଶେଲି ॥ ତା' ଲାଗି ସିଏ ତମଠୁ ବୟସରେ ବଡ଼ । ତାଙ୍କ ବୟସକୁ ଚମର...

ନାଟ୍ୟକାର ॥ ଏଇ ବାକ୍ୟଟାକୁ ଜଣେ ଆଇ. ଏ. ଏସ୍. ଅଫିସରଙ୍କ ଡାଇଲଗ୍ ଧରନେବା ?

ଶେଲି ॥ ପ୍ଲିଜ୍ ! ତମେ ଆଉ ଏମିତି କଳଙ୍କ କରନି, ଖୋକା ଭାଇ ତମର ଏତେ ବ୍ୟସ୍ତ ହେଇ ପଡ଼ିବା ଉଚିତ ହଉନି । ମୋ' କାହାଣୀରେ ତମର ସ୍ମୃତି ଟିକିଏ ରହିଗଲେ ତମର କୌଣସି କ୍ଷତି ହେବନାହିଁ ।

ନିର୍ଲିପ୍ତ ॥ କ୍ଷତି ହେବ କି ନ ହେବ ସେ ସମ୍ପର୍କରେ ତୋଠୁ ଉପଦେଶ ଶୁଣିବା ଦରକାର ହେଉନି ଶେଲି, ମୁଁ ଯାଉଛି । କିନ୍ତୁ ଗୋଟାଏ କଥା ଜାଣିରଖ, ଏ ନାଟକ ହେଇ ପାରିବନି । ମୁଁ ତାର ବହୁତ ବ୍ୟବସ୍ଥା କରେଇ ପାରେ ।

ନାଟ୍ୟକାର ॥ ଶେଲି ! ଏଇ ଫମ୍ପା ଧମକରେ ତମେ ଡରି ଯାଅନି । ସେ କିଛି କରି ପାରିବେ ନାହିଁ । ନାଲି ଆଖି ଦେଖେଇବା କଥା ଯଦି ତାଙ୍କ Subordinate officerଙ୍କୁ ଦେଖାନ୍ତୁ... ଏଇଠି ନୁହେଁ...

ନିର୍ଲିପ୍ତ ॥ ସ୍କାଉଣ୍ଡ୍ରେଲ ! ଅଭଦ୍ର !!

ଶେଲି ॥ ବାରମ୍ବାର ତାଙ୍କୁ ଅଭଦ୍ର ଓ ସ୍କାଉଣ୍ଡ୍ରେଲ ବୋଲି କହିବାରେ କୌଣସି ମାନେ ନାହିଁ ଖୋକା ଭାଇ...

ନିର୍ଲିପ୍ତ ॥ ଗୁଣ୍ଡା... ଇତର... ଆପଣଙ୍କୁ ଅଧ୍ୟାପକ କଲା କିଏ ?

ନାଟ୍ୟକାର ॥ ବେଶୀ ପାଟିକଲରୁ ଯଦି ଶଳା ତୋର ଅଫିସରପଣିଆ ଛଡ଼େଇ ଦେବି । ( ପ୍ରାୟ ତାକୁ ମାରିବା ପାଇଁ ଯାଉଥିଲା )

ନିର୍ଲିପ୍ତ ॥ ଅଲ୍ ରାଇଟ୍ ! ମୁଁ ଯାଉଚି ଶେଲି । ଠିକ୍ ଅଛି... (ଦ୍ରୁତ ଗତିରେ ଚାଲିଗଲା )

ଶେଲି || ( ଘଟନ୍ତି ଘଟନ୍ତି ପ୍ରାୟ ଦୌଡ଼ିଲା ଭଳି ଯାଇ ) ଖୋକା ଭାଇ ! ଖୋକା ଭାଇ !! ( ଫେରି ଆସି ) ଇଏ ତମେ କ'ଣ କଲ ? ମୁଁ ଖୋକା ଭାଇଙ୍କୁ ଭଲ ପାଏ ।

ନାଟ୍ୟକାର || କେତେ ହଜାର ଥର ଶୁଣିବି ସେଇ ଗୋଟାଏ କଥାକୁ । ତମ ଖୋକା ଭାଇ ଆଉ ତମର ଗୋଟାଏ ଲଭ୍ ସିନ୍ ମୁଁ ଲେଖି ଦେଇଚି । ଯଦି କହିବ ଆଉ ଗୋଟାଏ ଲେଖି ଦେବି ।

ନାଟ୍ୟକାର || ମୁଁ ବୟସ ବଢିଲା ପରେ ଆତ୍ମହତ୍ୟା କରିବି ।

ଶେଲି || ଓ !

[ ଧୀରେ ଧୀରେ ଝରକା ପାଖକୁ ଉଠିଯାଇ ]

...ହନେ ହନେ ସକାଳୁ ଉଠିଲା ପରେ ମତେ ଲାଗେ ମୁଁ ଯେମିତି ଅମୃତ ପିଇ ଅମର ହୋଇ ଯାଇଚି । ମୋ ଦେହ ସାରା ଯୌବନର ତରଙ୍ଗ... ବୁଝିଲ ନାଟ୍ୟକାର, ମତେ ଲାଗେ ସମସ୍ତେ ନିଜ ନିଜ ଜୀବନ କାହାଣୀ... ଆତ୍ମଲିପି... ଲେଖିବା ଉଚିତ । ନିଜ ସ୍ମୃତି ଗୁଡ଼ାକୁ ମନେ ପକାଇ ମୁଁ ଅମର ହୋଇ ରହିବା ପାଇଁ ଚାହେଁ—

ନାଟ୍ୟକାର || ସେଇଟା ତମର ଅହଂ... ego

ଶେଲି || ହୋଇପାରେ । ମଣିଷର ନିଜର ବୋଲି ଟିକିଏ ଅହଂ ଛଡ଼ା ଆଉ କ'ଣ ଅଛି ?

ନାଟ୍ୟକାର || ସ୍ମୃତି ଭିତରେ ବଞ୍ଚିବା ସହିତ... ଭବିଷ୍ୟତର ରଂଗୀନ୍ କଳ୍ପନା ଭିତରେ ମଧ୍ୟ । ଖାଲି ବର୍ତ୍ତମାନର ଦହନଶୀଳ ସତ୍ତା ଭିତରେ ଅନେକ ମଣିଷ ଛଟପଟ ହୁଅନ୍ତି...

ଶେଲି || କାରଣ ତମର ଅତୀତ ନାହିଁ... ଭବିଷ୍ୟତ ମଧ୍ୟ ।

ନାଟ୍ୟକାର || କିଏ କହିଲା ?

ଶେଲି || ତମେ କେବଳ ମୋ' ଅତୀତର ଅନ୍ଧକାର ଖୋଜିବାରେ ଲାଗିଚ । ନିଜ ସମ୍ପର୍କରେ କିଛି କହନା ।

ନାଟ୍ୟକାର || ନିଜ ସମ୍ପର୍କରେ ? ମୋ ନିଜ ଜୀବନରେ ନାଟକ ନାହିଁ ।

ଶେଲି ॥ ମିଛ କଥା, ସମସ୍ତଙ୍କ ଜୀବନରେ କିଛି ନା କିଛି ନାଟକ ଅଛି ।

ନାଟ୍ୟକାର ॥ ସବୁ ନାରୀଙ୍କର ଏମିତି ଗୁଡ଼ାଏ ରୋମାଣ୍ଟିକ୍ ଢଙ୍ଗ ଥାଏ... ସେଣ୍ଟିମେଣ୍ଟ ଥାଏ...

ଶେଲି ॥ ମୁଁ ଜାଣେ... ମୋ'ର ସବୁ ଜାଣିଲା ପରେ ତୁମେ ମତେ ଘୃଣା କରୁଛ ।

ନାଟ୍ୟକାର ॥ ହୁଁ ।

ଶେଲି ॥ କାହିଁକି ?

ନାଟ୍ୟକାର ॥ ଏଇ 'ଆତ୍ମଲିପି' ନାଟକ ଲେଖିବାହିଁ ଗୋଟାଏ ଭୁଲ୍, ତୁମେ ଏଇ ନାଟକଟା ଲେଖିବା ଆରମ୍ଭ କଲେ କାହିଁକି ?

ଶେଲି ॥ ଏଇ ନାଟକ ଲେଖେଇ ମୁଁ ତମ ଜୀବନର ରହସ୍ୟମୟ ଘଟଣା ଗୁଡ଼ାକ ଲେଖେଇ ଆଣିବି... ତମର ସବୁ ଗୋପନୀୟ ଘଟଣା ଜାଣିବି ।

ନାଟ୍ୟକାର ॥ ଗୋପନୀୟ ? ରହସ୍ୟ ? ଜୀବନରେ ଗୋପନୀୟ ବୋଲି କିଛି ନାହିଁ । ମଣିଷର ଭିତର ସ୍ୱରୂପ ଭିନ୍ନ । ଏଇ କାମନା ଓ ଆକାଂକ୍ଷା ମାନଙ୍କରୁହିଁ ଗୋପନୀୟତା ଓ ରହସ୍ୟ ଜନ୍ମ ନିଏ ।

ଶେଲି ॥ ତମ କଥାରୁ ମୁଁ ଖୁବ୍ କମ୍ ବୁଝେ ନାଟ୍ୟକାର । କେବଳ ଗୋଟାଏ କଥା... ମୁଁ ଅଭିନେତ୍ରୀ ବୋଲି ନୈତିକ କାରଣରୁ ମତେ ଘୃଣା କରୁନା ତ ?

ନାଟ୍ୟକାର ॥ (ରାଗିଯାଇ) ସବୁ ନାରୀ ସେମିତି ଅସହ୍ୟ ! ଗୋଟାଏ କଥାକୁ ବାରମ୍ବାର ଉଠାନ୍ତି । ଜୀବନଟା ଏକ କରୁଣ ମହାକାବ୍ୟ ହୋଇଥିବା ସତ୍ତ୍ୱେ ସେମାନେ ମନେକରନ୍ତି ଯେମିତି ଏଇଟା ଗୋଟାଏ ଫାର୍ସ !! ତମ ପାଖରେ କଳା ବୋଲି କିଛି ନାହିଁ... !! ଥିଲେ ସେଇ କାପୁରୁଷ ନିର୍ଲିପ୍ତ ପଠନାୟକ ପାଇଁ ତମେ ବ୍ୟସ୍ତ ହୁଅନ୍ତ ନାହିଁ !!

ଶେଲି ॥ ଅନେକ ବର୍ଷ ପରେ ଆଜି ମୁଁ ନିର୍ଲିପ୍ତ ପଠନାୟକକୁ ଦେଖି-ଥିଲି ।

ନାଟ୍ୟକାର ॥ ଭାରି ଫୁଟାଣି ଲେକଚରର ! ତାଙ୍କୁ ମୋ' ନାଟକରେ ଭିଲେନ୍ କରି ବ୍ୟଙ୍ଗ କରିବି ।

ଶେଲି ॥ ନାଟ୍ୟକାର ଜଣେ ପ୍ରତିହିଂସା ପରାୟଣ ବ୍ୟକ୍ତି ?

ନାଟ୍ୟକାର ॥ ହଁ । ମୁଁ ପ୍ରତିଶୋଧ ନେବି ।

ଶେଲି ॥ ରିଏଲି, ଇଣ୍ଟରେଷ୍ଟିଂ । ( ଟିକିଏ ଘୁଞ୍ଚି ଆସି ) ସତରେ… ମୋ' ଆଗରୁ କୌଣସି ନାଟ୍ୟକାର ସହିତ ଏତେ ନିବିଡ଼ ଭାବରେ ବସି ନଥିଲି । ତମକୁ ଜଣେ ମଉଳିଆ ଟୋକା ବୋଲି କୁହାଯାଇ ପାରେ ।

ନାଟ୍ୟକାର ॥ ମୋଟେ ନୁହେଁ । ମୁଁ ମଉଳିଆ ନୁହେଁ କି ଟୋକା ମଧ୍ୟ ନୁହେଁ । ଜୀବନ ସାରା ଗୁଡ଼ାଏ ଫଂଟାରସିକଙ୍କ ଗହଣରେ ରହି ରହି ତମେ ଗାମ୍ଭୀର୍ଯ୍ୟକୁ ଚିହ୍ନି ପାରୁନା…

ଶେଲି ॥ ସବୁ ସିରିଅସ୍ ଲୋକଙ୍କୁ ଦେଖିଲେ ମଜା ଲାଗେ… ଏଇ ଦେଖୁନା… ଯେମିତି ଖୋକାଖାଇ…

ନାଟ୍ୟକାର ॥ ଖୋକା ଖାଇ ! ହୁଁଃ ! ସାଂପ୍ରତିକ ମସ୍ତିଷ୍କହୀନତାର ଗୋଟାଏ ପ୍ରତୀକ… ଗୋଟାଏ ତୃତୀୟ ଶ୍ରେଣୀର ମୂଲ୍ୟବୋଧ-ହୀନ, ସ୍ୱାର୍ଥପର, କ୍ଷମତାଲିପ୍ସୁ ଅମଣିଷ !

[ ଭିତରୁ ଟେଲିଫୋନ୍ ଶବ୍ଦ ଏବଂ ନାଟ୍ୟକାର ଯାଇଛନ୍ତି ଭିତରକୁ ]

ହଁ… ହଁ… ନମସ୍ତେ… ଠିକ୍ ଅଛି… କିନ୍ତୁ ମୁଁ ଏ ବିଷୟରେ ସ୍ପଷ୍ଟ କଥାବାର୍ତ୍ତା କରିବାକୁ ଚାହେଁ… ଓ. କେ… ମୁଁ ଶନିବାର ପହଞ୍ଚିବି । ( ଫୋନ୍ ଛାଡ଼ି ଦେଉଛି )

ଶେଲି ॥ କିଏ ଫୋନ୍ କରିଥିଲା ?

ନାଟ୍ୟକାର ॥ ଆମ କଲେଜର ମ୍ୟାନେଜିଂ ସେକ୍ରେଟାରୀ । ହୁଏତ ଏ' ନାଟକ ଲେଖିବା ପାଇଁ ଚାକିରିରୁ ବାହାର କରିଦିଆ ଯାଇ-ପାରେ ।

ଶେଲି ॥ କ'ଣ ତମେ କହୁଛ **ନାଟ୍ୟକାର** ? ମୁଁ ବିଶ୍ୱାସ କରି ପାରୁନି ।

ନାଟ୍ୟକାର ।। ମାଧବ ଦାସ୍ ମୋ' ନାଁରେ କୁଆଡ଼େ କମ୍ପ୍ଲେନ୍ କରନ୍ତୁ···
ମୁଁ ଗୋଟାଏ ଅଭିନେତ୍ରୀର ଘରେ ଦିନ ରାତି ପଡ଼ିଛି···
ଏଇଟା ଜଣେ ଅଧ୍ୟାପକର ନୈତିକ ସ୍ୱାସ୍ଥ୍ୟରକ୍ଷା ପାଇଁ ଅନୁକୂଳ ନୁହେଁ···

ଶେଲି ।। ଖୋକା ଭାଇ ଏତେ ଖରାପ ଲୋକ ?

ନାଟ୍ୟକାର ।। ବରଂ ଏଇଟା ମୋ' ପାଇଁ ଖୁବ୍ ଏକ ଭଲ ଚ୍ୟାଲେଞ୍ଜ୍ ।
ମୁଁ ଅମ୍ଳଲିପି' କୁ ନେଇ ଗୋଟାଏ ଫିଲ୍ମ୍ କରିବି । ଓଡ଼ିଶାର ସବୁ ବଡ଼ ବଡ଼ ସହରରେ··· ସବୁ Subdivisional Head quartersରେ···

ଶେଲି ।। କିନ୍ତୁ କାହିଁକି ? ମୋ ଜୀବନର କାହାଣୀଟା ତମ ପାଇଁ ଏତେ ଗୁରୁତ୍ୱପୂର୍ଣ୍ଣ କାହିଁକି ।

ନାଟ୍ୟକାର ।। ଏଇଟା ଆମ ଦେଶର ଲୋକଙ୍କର ନୈତିକ ମୂଲ୍ୟବୋଧକୁ ପରୀକ୍ଷା କରିବାର ସମୟ । ସତ କଥାକୁ କିଏ କେତେ ସତ ବୋଲି ଗ୍ରହଣ କରୁଛି··· ଯିଏ ସତ୍ୟକୁ ଗ୍ରହଣ ନ କରି ପାରିବ ସିଏ ନିର୍ଲିପ୍ତ ପଟ୍ଟନାୟକ ଭଳି ମୋ ନାଁରେ influence କରିବ··· ମୋର image ଖରାପ କରେଇବ··· ଆଉ ଅଧିକା ହବ କ'ଣ ?

ଶେଲି ।। ବାସ୍ତବିକ୍··· ମୋ ପାଇଁ ଆପଣ ଅନେକ ହଇରାଣ ହେଲେ···

ନାଟ୍ୟକାର ।। ପ୍ଲିଜ୍··· ମୋ' ଉପରେ ଦୟା ଦେଖାଅ ନାହିଁ । ତମର ମିଠା ମିଠା ଦୟାପୂର୍ଣ୍ଣ କଥା ଗୁଡ଼ାକ ଖୋକା ଭାଇଙ୍କ ପାଇଁ ରିଜର୍ଭ କରି ରଖ ।

ଶେଲି ।। ତମେ ନିଜକୁ ଏତେ ବଳବାନ୍ ବୋଲି ଭାବ ? ( ଟିକିଏ ପରେ, ନାଟ୍ୟକାରଙ୍କଠୁ ଉତ୍ତର ନପାଇ ) ନାଟ୍ୟକାର; ତମର ବୟସ କେତେ ?

ନାଟ୍ୟକାର ।। ବୟସ ନ ଜାଣି ଏ ଯାଏଁ ସମ୍ପର୍କ ଆଗେଇ ଆସିଛି । ଜାଣିଲେ କିଛି ଅଧିକା ଲାଭ ହବ ?

ଶେଲି ।। ଘରେ ତମର ଆଉ କିଏ ?

ନାଟ୍ୟକାର ॥ ଘରେ ମଦ ଆଉ କିଏ ଆଣିଥାନ୍ତା··· ମୁଁ ଏଇଠି ତମ ପାଖରେ ପଡ଼ିଥାନ୍ତି କାହିଁକି ?

ଶେଲି ॥ କାହାକୁ ପ୍ରେମ କରୁଛ ?

ନାଟ୍ୟକାର ॥ ପ୍ରେମ ? ··· ( ଭାବି ) ନା ।

ଶେଲି ॥ ବାପା ମା ?

ନାଟ୍ୟକାର ॥ ମୃତ ।

ଶେଲି ॥ କେତେ ଦିନ ହେଲା ?

ନାଟ୍ୟକାର ॥ ଅନେକ ଦିନରୁ ।

ଶେଲି ॥ ବାପା ? ବାପାଙ୍କ ମୁହଁଟା ମନେ ପଡ଼ୁଛି ? ବାପାଙ୍କ ସ୍ମୃତି ମନରେ ଆସୁଛି ?

ନାଟ୍ୟକାର ॥ ହଁ ମନେ ପଡ଼ୁଛି ।

ଶେଲି ॥ କ'ଣ ମନେ ପଡ଼ୁଛି ?

ନାଟ୍ୟକାର ॥ ଖୁବ୍ ଶ୍ରେଷ୍ଠ ହୋଇଥିଲେ ।

ଶେଲି ॥ ବାପା କ'ଣ କରୁଥିଲେ ?

ନାଟ୍ୟକାର ॥ କୃଷି । ଆମର ଅନେକ କୃଷି ଜମି ଥିଲା ।

ଶେଲି ॥ ତାପରେ ?

ନାଟ୍ୟକାର ॥ ଧାନ ବିକ୍ରି ହୋଇ ଆମର ଟଙ୍କା ଆସେ । ବାପାଙ୍କ ନାଁରେ ଦୁଇ ଦୁଇଟା ହାଇସ୍କୁଲ ଥିଲା । ଦିନେ ରାତିରେ··· ମୁଁ ବାପାଙ୍କ ପାଖରେ ଶୋଇଛି ହଠାତ୍ ହଇହଲା ଚିତ୍କାର ଶୁଣି ନିଦ ଭାଙ୍ଗିଗଲା ଦେଖିଲି ଆମଘରେ ନିଆଁ ଲାଗିଛି । ବାପାଙ୍କର ପୁରୁଣା ଶତ୍ରୁମାନେ ·· ରାଜନୈତିକ କାରଣ··· ବାପା ଗାନ୍ଧୀଙ୍କର ଭକ୍ତ ଥିଲେ··· ସେଇଟା ଅନ୍ୟମାନଙ୍କ ପାଇଁ ଅସହ୍ୟ ଥିଲା··· ।

ଶେଲି ॥ ତାପରେ ?

ନାଟ୍ୟକାର ॥ ଚାରିପଟେ ନିଆଁ । ବାପା ମତେ ଜାବୁଡ଼ି ଧରି ଠିଆ ହୋଇ- ଥାନ୍ତି··· ମୁଁ ଚିତ୍କାର କରି ଉଠିଲି··· ଚାରିଜଣ ଦୀର୍ଘକାୟ ଲୋକ କଟୁରି ନେଇ ପହଞ୍ଚିଗଲେ··· ମୁଁ ବାପାଙ୍କ ପାଖକୁ

ଲଗି ଆସିଲ... ସେମାନେ ମତେ ପଲେଇ ଯିବାପାଇଁ ବାଧ୍ୟକଲେ ଓ ସେଇଥିରୁ଼ ଜଣେ ବାପାଙ୍କ କଣ୍ଠସ୍ୱରେ ହାଣିବାକୁ ଲାଗିଲା... ନିର୍ମମ ଭାବେ । ବାପା ମତେ ଧରିଥାନ୍ତି... ତାଙ୍କର ହାତ ଗୋଡ଼ କଟା ହେଲା... ପିଚ୍ ପିଚ୍ ରକତ ଗୁଡ଼ାକ ମୋ' ପାଟି ଭିତରେ ପଶି ଯାଉ ଥାଏ... ତା'ପରେ ତାଙ୍କ ବେକଟା... ଏବଂ ସେ ସେଇଠି ସେମିତି ଢଳି ପଡ଼ିଲେ । ( ନିଷ୍ଠୁର ଭାବରେ ) ଆଉ କିଛି ଶୁଣିବ ? ମୋ' ଜୀବନ ସମ୍ପର୍କରେ ଆଉ କିଛି ରୋମାଣ୍ଟିକ୍ ସୁନ୍ଦର ଘଟଣା...? କ'ଣ ଜାଣିବାକୁ ଚାହଁ ?

ଶେଲି ॥ ମୁଁ ଜାଣେ... ତମ ଜୀବନରେ ଏମିତି ଗୋଟାଏ କିଛି ଦୁଃଖର କାହାଣୀ ଥିବ... ନ ହେଲେ ଅଯଥା ଏମିତି ନିଷ୍ଠୁର କର୍କଶ ବ୍ୟବହାର କରନ୍ତ କାହିଁକି ?

ନାଟ୍ୟକାର ॥ ଏ ଘଟଣାର ଆଦୌ କୌଣସି ଗୁରୁତ୍ୱ ନାହିଁ । ଯୁଦ୍ଧରେ ସୈନ୍ୟମାନେ ଆହୁରି କରୁଣ, ନିର୍ମମ ଭାବରେ ମରୁଛନ୍ତି । ଲୋକେ ଅଯଥା ମଣିଷ ଜୀବନ ଉପରେ ଗୁରୁତ୍ୱ ଆରୋପ କରନ୍ତି, ଜନେ ନା ଜନେ ମରିବାକୁ ହୁଏ; କିଏ କେଉଁ ଭାବରେ... ସେଇଥିପାଇଁ ବଞ୍ଚିଥିବା ଅବସ୍ଥାରେ ମଉଜ କର... ତମେ ଜାଣି ଯାଇଛ ଶେଲି... ମୋର ଶୁଭେଚ୍ଛା ନିଅ—

ଶେଲି ॥ ତମେ ମୋ ପ୍ରତି ଏତେ ନିଷ୍ଠୁର ହୁଅ କାହିଁକି ନାଟ୍ୟକାର ?

ନାଟ୍ୟକାର ॥ ଓଃ ! ତମେ ତା'ବି ଜାଣିବାକୁ ଚାହଁ ? ନା... ଜାଣିଶୁଣି ତମେ ମୋ ସାଙ୍ଗରେ ଖେଳୁଛ... ଖେଳିବା ତମର ଆହୁରି ଶେଷ ହେଇନି... ସେଇଥର... ସେଇ ପିକ୍ନିକ୍ ପରଠାରୁ ତମେ ତମେ ମୋ' ସାଙ୍ଗରେ...

ଶେଲି ॥ ( ନାଟ୍ୟକାରର ପାଟିରେ ହାତ ଦେଇ ) ଥାଉ, ଆଉ କହିବାକୁ ପଡ଼ିବନି, ମୁଁ ବୁଝି ପାରୁଛ ।

ନାଟ୍ୟକାର ॥ ମୁଁ ଜାଣେ··· ତମେ ମୋ' ଅହଂକାରକୁ ଭାଙ୍ଗି ଦେବାକୁ ଚାହଁ··· ମୋ ପାଖିରେ ମୋ'ଠୁ ଶୁଣିବାକୁ ଚାହଁ ଯେ ମୁଁ ତମ ପାଇଁ···

ଶେଳୀ ॥ ( ତା' ଆଖିରୁ ଦୁଇ ଟୋପା ଲୁହ ଗଡ଼ି ଯାଇଚ ) ତମେ ଏ ପର୍ଯ୍ୟନ୍ତ ମତେ ଭଲ ପାଅ ବୋଲି କହିବା ପାଇଁ କାହିଁକି ଯେ କୁଣ୍ଠାବୋଧ କର··· ମୁଁ ବୁଝି ପାରେନା···

[ ନାଟ୍ୟକାରର ମୁଣ୍ଡର ବାଳଗୁଡ଼ିକୁ ସାଉଁଳୁ ଥିବା ଅବସ୍ଥାରେ ପଶି ଆସିଛୁ ସିଦ୍ଧାର୍ଥ···ନାଟକର ପ୍ରଯୋଜକ ]

ସିଦ୍ଧାର୍ଥ ॥ ( ପଶି ଆସି ) ଆଇ ଆମ୍ ସରି···

ଶେଳୀ ॥ ଆସନ୍ତୁ, ଆସନ୍ତୁ ।

ନାଟ୍ୟକାର ॥ ଆରେ··· ସିଦ୍ଧାର୍ଥ !

ସିଦ୍ଧାର୍ଥ ॥ ହେଲ୍ଲ ? କାମ ହେଲ୍ଲ ?

ନାଟ୍ୟକାର ॥ ( ବିରକ୍ତ ହୋଇ ) ଅଭଦ୍ରଙ୍କ ଭଳି ହୁଅନା କହୁଚ ।

ସିଦ୍ଧାର୍ଥ ॥ ଏସ୍ତା ତ ? ଆମେ କଥାଟାକୁ ସିଧାସଳଖ କହିଲେ ହେଲୁ ଅଶ୍ଳୀଳ··· ଅଭଦ୍ର··· ଆଉ ସେଇ କାର୍ଯ୍ୟଟିକୁ ଘୋଡେଇ ଲୁଚେଇ, ମୁଖା ପିନ୍ଧି କଲେ ସେଇଟା ହବ··· ଭଦ୍ରାମୀ !!

ନାଟ୍ୟକାର ॥ ସେଇଥିପାଇଁ ନାଟକରେ ମେକ୍ ଅପ୍ ନିଆଯାଏ ।

ଶେଳୀ ॥ ମୁଁ କଫି ନେଇ ଆସିବି ସିଦ୍ଧାର୍ଥ ବାବୁ ?

ସିଦ୍ଧାର୍ଥ ॥ ହିଁ, ଗରମ କଫି ଜନ୍ତୁ··· ଅବଶ୍ୟ ଶେଳୀର ଦେହରେ କ୍ୟାଟ୍‌ଲଟା ଥୋଇ ଦେଲେ ବି କଫି ଗରମ ହେଇଯିବ···

ଶେଳୀ ॥ ମତେ ଗୋଟାଏ ହିଟର୍ ମନେ କଲେ କି ?

( ଭିତରକୁ ଯାଇଛୁ )

ସିଦ୍ଧାର୍ଥ ॥ ଉଣା ଅଧିକେ ସେସ୍ତା ନୁହଁ ଆଉ କ'ଣ ? ନାଟ୍ୟକାର ଜାଣିଥିବେ । କୋଳରେ ଶୋଇଥିଲେ ତ··· ( ଶେଳୀକୁ ଲକ୍ଷ୍ୟ କରି ) ଯିବ ଭିତରକୁ ?

ନାଟ୍ୟକାର ॥ କର୍ଦ୍ଧେଣକ ଯାହିବ ?

ସିଦ୍ଧାର୍ଥ ॥ ଆରେ··· ଲେକଟା ମୋ' ସାଙ୍ଗରେ ଆସୁଥିଲା ସେ···
ରହିଲା କୋଉଠି ?

ନାଟ୍ୟକାର ॥ ରବି ବାବୁ··· ରବି ବାବୁ···

ସିଦ୍ଧାର୍ଥ ॥ ବିଶେଷ ଦରକାର ଥିଲା ?

ନାଟ୍ୟକାର ॥ ନୂଆ ସିନ୍‌ଟା ପଢ଼ିଥା'ନ୍ତେ··· ଆଚ୍ଛା ମୁଁ ବାହାରୁ ଦେଖି
ଆସେ··· ( ଯାଇଛୁ··· )

ସିଦ୍ଧାର୍ଥ ॥ ( ଘୂରି ଘୂରି ରୁମ୍‌ଟି ଦେଖୁଚି ଓ ଝରକା ପଟେ ଶେଲୀକୁ
ଚାହୁଁଚି )

ଶେଲୀ ॥ ( ଦୁଇ ମଗ୍ କଫି ନେଇ ଆସି ) ନାଟ୍ୟକାର ?

ସିଦ୍ଧାର୍ଥ ॥ ନାଟ୍ୟକାର ନିର୍ଦ୍ଦେଶକଙ୍କର ସନ୍ଧାନରେ ବାହାରକୁ ଯାଇ-
ଛନ୍ତି । ତମେ ବସ ଶେଲୀ, ତମର ଓ ମୋର ବସି କଫି
ପିଇବା ।

ଶେଲୀ ॥ ( ଇଂଗିତ କରି, ଦୁଷ୍ଟାମୀ ହସ ହସି ) ନାଟ୍ୟକାର ନିଜେ
ନିଜେ ଗଲେ ନା ମୋ' ସାଙ୍ଗରେ ଏକଲା କଫି ଖାଇବାର
ସୁଯୋଗଟା ଆପଣ ତିଆରି କଲେ ?

ସିଦ୍ଧାର୍ଥ ॥ ତମ ସାଙ୍ଗରେ କଫି ଖାଇବାଟା କ'ଣ ଗୋଟିଏ ସୁଯୋଗ ?
ବ୍ରଥର୍ ପିଇବା ଉଚିତ ।

ଶେଲୀ ॥ ( ପାଖରେ ବସି ) ସେଥିପାଇଁ ! ଏଇଠି ଏଇ ଗରିବ ଶେଲୀ
ଦାସ୍‌ର ଘରେ ପ୍ରଯୋଜକ ସିଦ୍ଧାର୍ଥ ବର୍ମା କ'ଣ କଫି ପିଇବା
ଉଚିତ ? ସିଏ ମତେ ନେଇ କୌଣସି ଫାଇଭ୍‌ଷ୍ଟାର୍
ହୋଟେଲ୍‌ରେ ଲାଇମ୍ ଜନ୍ ବିଦେଶୀ ଖାନା ଖାଇବା
ଦରକାର ।

ସିଦ୍ଧାର୍ଥ ॥ ସିଦ୍ଧାର୍ଥ ବର୍ମା କ'ଣ ସେଥିପାଇଁ କେବେ ମନା କରିଚି ?
( ଗାଲକୁ ଚିପି ଦେଇ )

ଶେଲୀ ॥ (ଟିକିଏ ଦୂରକୁ ଘୁଞ୍ଚିଯାଇ) ମତେ ସେମିତି ଝିଅ ଭାବିବେନି !

ସିଦ୍ଧାର୍ଥ ॥ କେମିତି ଝିଅ ?

ଶେଲୀ ॥ ଯେମିତି ବୋଲି ଆପଣ ଭାବୁଛନ୍ତି !

ସିଦ୍ଧାର୍ଥ ॥ ( ପାଖକୁ ଲଗି ଆସି, ତା' ହାତକୁ ଧରି ) ସୁନ୍ଦର ନେଲ୍ ପଲିସ୍ !!

ଶେଲି ॥ ଦେଖନ୍ତୁ··· ମୁଁ ଏନ୍‌ଗେଜଡ୍···

ସିଦ୍ଧାର୍ଥ ॥ କା' ସାଥିରେ ? ନାଟ୍ୟକାର ?

ଶେଲି ॥ କନ୍ଦ୍ର ପାଣ୍ଡବନ ।

ସିଦ୍ଧାର୍ଥ ॥ ଓ' ଲକ ? ଆଚ୍ଛା ଭଦ୍ରଲୋକ ମୋର ଚହ୍ନା ?

ଶେଲି ॥ ଆପଣ ଚହ୍ନିବେନ । ସେ ଡ୍ରାମାର ଧାର ଧାରେନା···

ସିଦ୍ଧାର୍ଥ ॥ ତା' ହେଲେ ?

ଶେଲି ॥ ସେ କଲେଜରେ ପାଠ ପଢ଼ାନ୍ତି···

ସିଦ୍ଧାର୍ଥ ॥ ଅଧ୍ୟାପକ ?

ଶେଲି ॥ ହଁ··· !

ସିଦ୍ଧାର୍ଥ ॥ ବେଶ୍‌, ତା ହେଲେ ! ଅଧ୍ୟାପକ ଲାଇବ୍ରେରୀରେ ବସି ବିଦ୍ୟାଚର୍ଚ୍ଚା କରୁ କରୁ ଏପଟେ ଚଢ଼େଇଟା ଫୁର୍‌ର୍···

ଶେଲି ॥ ଦୁଷ୍ଟ, ଅଭଦ୍ର !! (ଉଠି ଯାଉଥିଲା ) ମୋର ଭବିଷ୍ୟତ୍ ନଷ୍ଟ କରିବେ ଆପଣ···!

ସିଦ୍ଧାର୍ଥ ॥ (ପଣତ କାନକୁ ଧରୁ ଧରୁ) ଆହା··· ଯାଉଛ କୁଆଡ଼େ···? ଏମିତି ଟିକିଏ ଗେଲ ଆଦର କଣ ପକେଇଲେ ଭବିଷ୍ୟତ୍‌ଟା ନଷ୍ଟ ହୋଇ ଯାଉଛି···?

ଶେଲି ॥ ଆପଣଙ୍କୁ ଦେଖିଲେ ମୋର ପ୍ରାଣେ ଭୟ ।

ସିଦ୍ଧାର୍ଥ ॥ ( ଉଠି ) କାହିଁକି ? ମୁଁ ବାଘ ନା ଭାଲୁ ?

ଶେଲି ॥ କୌଣସି ଏକ ହିଂସ୍ର ଜନ୍ତୁ !

ସିଦ୍ଧାର୍ଥ ॥ ମାଂସାସୀ ଜନ୍ତୁ ?

ଶେଲି ॥ ହଁ ।

ସିଦ୍ଧାର୍ଥ ॥ ରବି ଦାସ୍ ଆଉ ନାଟ୍ୟକାର ?

ଶେଲି ॥ ସେମାନେ ଅନେକ ଭଲ ।

ସିଦ୍ଧାର୍ଥ ॥ ତମର ବରକୁଲ ଡାକବଙ୍ଗଲା କଥା ମନେ ପଡ଼ୁନି ?

ଶେଲି ॥ ସେଇଟା ଆମ୍ଭଲପି ନାଟକର ଗୋଟାଏ ମୁଖ୍ୟ ଘଟଣା ।

ସିଦ୍ଧାର୍ଥ ॥ ବାଃ ! ନାଟ୍ୟକାର ସେ ହିନ୍ଟା ଲେଖିଲଣି ?

ନେଲ୍ଲୀ ॥ ସକାଳେ ଲେଖାହେଲା···

[ ହଠାତ୍ ରବିଦାସ ପ୍ରବେଶ କଲେ
ପଛେ ପଛେ·ନାଟ୍ୟକାର ]

ରବିଦାସ ॥ ଏସ୍ପା ଗୁଲଚନ୍ତି ବାବୁଙ୍କର ? ଆପଣଙ୍କୁ କିଏ କହିଲା ଏଇଠିକି ଆସି ଉତ୍ସବ କରିବାପାଇଁ ? ମୁଁ ମନା କରିଥିଲି ନା ?

ସିଦ୍ଧାର୍ଥ ॥ ବାଃ ! ପଇସା ଖର୍ଚ୍ଚ କରିବି ମୁଁ··· 'ଆମ୍ରପାଲି' ନାଟକର ପ୍ରତ୍ୟୂଷର··· ଆଉ ଆପଣମାନେ ନାଁ କମେଇବେ···!!! ଆମେ ଟିକିଏ ହଇଚଇନ୍‌କୁ ନେଇ ଫୂର୍ତ୍ତି ମଧ୍ୟ କରି ପାରିବୁ ନାହିଁ ?

ରବିଦାସ ॥ କର, ଆରାମ୍‌ସେ କର ବାବା··· ମୋର ଆପତ୍ତି ନାହିଁ··· ନାଟକଟା ଯେତେବେଳେ flop କରିବ ସେତିକବେଳେ ମତେ କହିବନି ଆଉ !

ସିଦ୍ଧାର୍ଥ ॥ ଦେଢ଼ହଜାର ଟଙ୍କା ପେମେଣ୍ଟ ହଉଚ ନର୍ତ୍ତକୀଙ୍କୁ··· ନାଟକ flop କରିବ ? ତାପରେ ନର୍ତ୍ତକୀଙ୍କର ନାକରେ ଦଉଡ଼ି ଲଗେଇ ଟାଣି ଦେବୁନି ଆମେ ? ହଜ ପଇସା ଖର୍ଚ୍ଚ କରୁଛୁଟି ?

ରବିଦାସ ॥ ହଁ··· କ'ଣ ଲେଖିଚ ସେ ସିନ୍‌ଟା ଆଣିଲ ନାଟ୍ୟକାର···
ନାଟ୍ୟକାର ॥ Scriptଟା Bedroom table ଉପରେ ।

( ରବିଦାସ ଭିତରକୁ ଯାଉଛନ୍ତି )

ସିଦ୍ଧାର୍ଥ ॥ ରବିବାବୁଟା ଖୁବ୍ talented, ନୁହେଁ ?
ନାଟ୍ୟକାର ॥ କାନ୍ ଗୁଲିସିବ ପଛେ, ନାଟକଟାକୁ successful କରେଇବ ।

ସିଦ୍ଧାର୍ଥ ॥ ସେଇଥିଲାଗି ତାର ସବୁ ଉତ୍ପାତ ମୁଁ ସହିଯାଏ ।

ନାଟ୍ୟକାର ॥ ହେଃ ! ଉତ୍ପାତ ଆଉ କ'ଣ ? ସେ ତମକୁ ଖୁବ୍ ଭଲ ପାଏ । ବଡ଼ଭାଇ ଭଳି ! ସେଇଥିପାଇଁ ଟିକିଏ ମୁରବୀ-ପଣିଆ, ଆଉ କ'ଣ ?

ସିଦ୍ଧାର୍ଥ ।। ଆଉ ନେଭର ମାଇଣ୍ଡ୍ ।

ରବିଦାସ ।। ( ପ୍ରବେଶ କରି ) ନାଟ୍ୟ'କାର ! ଦ୍ୱିତୀୟ ଦୃଶ୍ୟଟା ପଢ଼ ।

ନାଟ୍ୟକାର ।। ମୁଁ କହୁଚି ନା ନିଜ ନାଟକ ପଢ଼ିବା ପାଇଁ ମତେ ଭଲ ଲାଗେନା···

ରବିଦାସ ।। ତମ ଅକ୍ଷର ପଢ଼ିବା ମୁସ୍କିଲ୍ ।

ସିଦ୍ଧାର୍ଥ ।। ଦେଖ, ଡ଼ିରେକ୍ଟର ! ନୋ' ପଢ଼ାପଢ଼ି ବିଜ୍‌ନେସ୍, ଆକ୍‌ଟିଂ କରି ମତେ ବୁଝାଇ ଦିଅ··· ଏଇଠି ଗୋଟାଏ ଲଭ୍ଂ ରିହାରସାଲ୍ ହୋଇ ଯାଉ !!

ନାଟ୍ୟକାର ।। ହଉ ।

ରବିଦାସ ।। ( ପାଣ୍ଡୁଲିପିଟି ପଢ଼ି ) ତା' ହେଲେ ସିଏ ଯାହା ସେଲ୍ କରୁ । ନାଟ୍ୟକାର ନିଜେ ନାଟ୍ୟକାର ଭୂମିକାରେ ପ୍ରଯୋଜକ ନିଜେ ପ୍ରଯୋଜକ ଭୂମିକାରେ···

ସିଦ୍ଧାର୍ଥ ।। ନିର୍ଦ୍ଦେଶକ···?

ରବିଦାସ ।। ନିର୍ଦ୍ଦେଶକ ତ ତାଙ୍କ ଭୂମିକା ଆରମ୍ଭ କରି ଦେଲେଣି··· ( ପକେଟରୁ ହୁଇସିଲ୍ ବାହାରକରି ବଜେଇଲେ ) Now··· start— !! ( ବଡ଼ ପାଟିରେ ଡ଼ାକିଲେ ) ଗୃମ୍‌ସ୍ତ ପଦ୍ମଲମାନ୍ ! ଗୃମ୍‌ସ୍ତ ପଦ୍ମଲମାନ୍ !!

ଗୃମସ୍ତ ।। ଅବଧାନ୍ !

ରବିଦାସ ।। ବର୍ତ୍ତମାନ୍ ନାଟକ ରିହାର୍ସାଲ୍ ଆରମ୍ଭ ହେବ ।

ଗୃମସ୍ତ ।। ( ସ୍ପ୍ରିଙ୍ଗ୍ ଛୁରି ବାହାର କରି ) କାହା ବେକରେ ଛୁରି ପଡ଼ିବ ଅବଧାନ୍ ?

ରବିଦାସ ।। ଆବେ ଛୁରି କେ ବଜେ··· ଏଇଠି ଦୃଶ୍ୟ ବଦଳିବା ଉଚିତ ଶୀଘ୍ର ବ୍ୟବସ୍ଥା କର ।

ଗୃମସ୍ତ ।। ହଜୁର !

ରବିଦାସ ।। ଲାଇଟ୍‌ସ୍ ଅଫ୍···!!

ଗୃମସ୍ତ ।। ହଜୁର । ( ଯାଇଚି )

[ ମଞ୍ଚ ଅନ୍ଧାର ହେଲ ଏବଂ ଧରେ ଧରେ ଝାପ୍‌ସା ଝାପ୍‌ସା ରଙ୍ଗୀନ୍ ଆଲୋକର ଭ୍ରାନ୍ତ ଭିତରେ ନିର୍ଦ୍ଦେଶକ କହୁଥିଲେ; 'ଆଲୋକ'··· 'ଆଲୋକ' କିନ୍ତୁ ମଂଚ ଉପରକୁ କୌଣସି ସ୍ପଷ୍ଟ ଆଲୋକ ଆସିଲା ନାହିଁ । କେବଳ ବିବର୍ଣ୍ଣ ରଙ୍ଗ ଗୁଡ଼ିଏ··· ଧୋଇ ହୋଇ ଯାଇଥିବା ସ୍ଲୁଡ ଭଳି, ତାର ଭିତରେ ଦେଖାଗଲେ ନାଟ୍ୟକାର ସାଙ୍ଗରେ ଶେଲୀ ବୁଲିଛି ଏବଂ ଆଉ କେତେବେଳେ କୁଏଡ ଶେଲୀ କାହାକୁ ଯେମିତି ଅପେକ୍ଷା କରୁଛି । ସେମିତି ଏକ ନିର୍ଜନ ପ୍ରତୀକ୍ଷମାଣ ଅବସ୍ଥାରେ ତା'ର ଦେଖାହୋଇଛି ରବିଦାସ ଓ ସିଦ୍ଧାର୍ଥ ସହିତ । ରବିଦାସ ତାକୁ ଡ଼ାକି ନେଇଛି ଏବଂ ତିନିଜଣ ଅଦୃଶ୍ୟ ହୋଇ ଯାଇଛନ୍ତି । ମଞ୍ଚର ଆଲୋକ ପୁଣିଥରେ ଘୂରିଯାଇଛି ଓ ତାର ଭିତରେ ଶୁଭୁଛି ନିର୍ଦ୍ଦେଶକର ସ୍ୱର । ]

ନିର୍ଦ୍ଦେଶକ ॥ 'ଅସ୍ପୃଶ୍ୟ' ମୋ' ଜୀବନରେ ଏକ ସ୍ମୃତିସିକ୍ତ ଘଟଣା । ଆମେ ନାଟକ ପାଇଁ ନାୟିକା ଖୋଜୁଥିଲୁ, ଏମିତି ଗୋଟାଏ ନାୟିକା··· ଯେ ନାଟ୍ୟକାରକୁ ପ୍ରେରଣା ଯୋଗେଇ ପାରିବ··· ଆମ ସାଙ୍ଗରେ ଠିକ୍‌ଏ ବାହାରକୁ ବୁଲି ଯାଇ ପାରିବ ଓ ଅଭିନୟ କରୁଥିବ··· ଏବଂ ସେତିକବେଳେ ନାଟ୍ୟକାର ସହିତ ଶେଲୀର ପ୍ରଥମ ଦେଖା···

[ ବର୍ତ୍ତମାନ ମଞ୍ଚର ଆଲୋକ ସ୍ଥିର ହେଲ ଏବଂ ସେଇ ସ୍ଥିର ଆଲୋକ ଭିତରେ ଦେଖାଗଲେ ନିର୍ଦ୍ଦେଶକ ନିଜେ ଗୋଟିଏ ଡ୍ରାଇଭର ଭୂମିକାରେ ପ୍ରବେଶ କରୁଛନ୍ତି ଏବଂ ଗୋଟାଏ କାଳ୍ପନିକ କାର୍‌ର ପଛସିଟ୍‌ରେ ଯେମିତି ଶେଲୀ ନାଟ୍ୟକାରଙ୍କ ପାଖରେ ଝୁମି ଯାଇଛି । ଗାଡ଼ି ଚାଲିବା ଶବ୍ଦ । ]

Source: Author, Digitized by PPRACHIN, SOA

ଶେଲୀ ॥ ଆଗରେ ଭୟଙ୍କର ଅନ୍ଧାର...

ନାଟ୍ୟକାର ॥ ଡ଼ର ମାଡ଼ୁଚ ?

ଶେଲୀ ॥ ଆପଣ ପାଖରେ ଅନ୍ତତଃ ଯେ—

ନାଟ୍ୟକାର ॥ ଝରକା କାଚଟା ବନ୍ଦ କରିଦେବ ? ( ଗୋଟିଏ ଝାଲ୍କାନ୍ତକ କାଚ ବନ୍ଦ କରିବାକୁ ଗଲେ )

ଶେଲୀ ॥ ନା, ନା, ଥାଉ । ଟିକିକା ବୂଳର ଏ ପବନଟା ଦେଖ ଭଲ ଲାଗୁଛି ।

ନର୍ଦ୍ଦେଶକ ॥ ଦରବାଜା ଠିକ୍ ସେ ବନ୍ଦ୍ କିଜିୟେ ବାବୁଜୀ ! ନହିଁ ତୋ ଏକ୍ସିଡେଣ୍ଟ୍ ହୋ ଜାଏଗା...

ନାଟ୍ୟକାର ॥ ଠିକ୍ ହୈଁ ।

ଶେଲୀ ॥ ଇସ୍ ! ଗୋଟାଏ କୋକଶିଆଳୀ !

ନାଟ୍ୟକାର ॥ ଏ ଅଞ୍ଚଳରେ ବହୁତ ମିଳିବେ ।

ଶେଲୀ ॥ ଏକବାରେ ଜଅନ୍ତା କୋକଶିଆଳୀଟେ—

ନାଟ୍ୟକାର ॥ କେମିତି ଦୌଡ଼ି ପଳେଇଲା, ଦେଖିନା ?

ଶେଲୀ ॥ କୋକଶିଆଳୀ ଗୁଡ଼ାକ ଖୁବ୍ ସିଆଣା, ନୁହଁ ?

ନାଟ୍ୟକାର ॥ ଲୋକେ କହନ୍ତି,

ଶେଲୀ ॥ କିନ୍ତୁ ଜାଲ ପକାଇଲେ ଧରା ପଡ଼ିଯିବ ।

ନାଟ୍ୟକାର ॥ ହେଃ ! ଜାଲରେ ପୁଣି କୋକଶିଆଳୀ ପଡ଼ିବ ! ଜାଲ ଛିଣ୍ଡିଯିବ !

( କିଛି ସମୟ ନୀରବତା )

ନର୍ଦ୍ଦେଶକ ॥ ବାବୁଜୀ ଯହାଁ କହିନେ ଦିନ୍ ଠହରେଙ୍ଗେ... ?

ନାଟ୍ୟକାର ॥ ଐସେ ଦୋ' ଚାର ଦିନ୍ !

ନର୍ଦ୍ଦେଶକ ॥ କୋଇ କହ ରହା ଥା' ଯହାଁ ଆଜ୍‌ବାଜ୍ ମେଁ କହିଁ ଏକ ଦେବୀ ମନ୍ଦିର ହୈ... ନାରାୟଣୀ କହତେ ହୈ... ଚଲିୟେ ବାବୁଜୀ କଲ୍ ସୁବହ ଓ୍ୟହାଁ ଜାଏଁଗେ...

ଶେଲୀ ॥ ସତରେ ! ନାରାୟଣୀ ଖୁବ୍ ସୁନ୍ଦର ଜାଗା ବୋଲି ଶୁଣିଛି ।

ନାଟ୍ୟକାର || ପାହାଡ ଚଢ଼ିବାକୁ ପଡ଼ିବ, ତମେ ତ ଚଢ଼ି ପାରିବନି !

ଶେଲୀ || ଆପଣ ଅଛନ୍ତି, ହାତ ଧରି ଉଠେଇ ନେଇ ଯିବେ !

ନାଟ୍ୟକାର || ବହୁତ ଜଙ୍ଗଲ ଗଛ... ଦେଖି ଶୁଣି ନ ଆସିଲେ ଲୁଗାରେ ଲଗି ଅଟକି ଯିବ ।

ଶେଲୀ || ଜଙ୍ଗଲର ମଝି ଗୋଟିଏ ସ୍ୱାଦ ଅଛି ।

ନାଟ୍ୟକାର || ଜଙ୍ଗଲଟା ତମ ଆମ ମନ ପରି ଅନ୍ଧାର ଓ ଅପନ୍ତରା ।

ଶେଲୀ || ଜଙ୍ଗଲ ନଥିଲେ ରଙ୍ଗୀନ ପାଖୁଡ଼ାମାନେ ନିଜକୁ ଅନେକ ଅସହାୟ ମନେ କରନ୍ତେ !!

ନିର୍ଦ୍ଦେଶକ || ବାବୁଜୀ ଯହାଁ ସେ ଘାଟ୍ ରୋଡ୍ ଶୁରୁ ହୁଆ... ଉପର ଲେ ଜାଏଙ୍ଗେ ?

ଶେଲୀ || ଚଲେ ଉପର ଯାଏଁଗେ !

ନିର୍ଦ୍ଦେଶକ || ତା'ମାନେ ଆରପଟକୁ ଚାଲି ଯିବାକୁ ପଡ଼ିବ, ଟ୍ରାଫିକ୍ ଆସିଲେ ଅସୁବିଧା, କାର୍ ବୁଲେଇ ହବନି ।

ଶେଲୀ || ତା'ହେଲେ... ଏଇଠି ଅଟକିବା ?

ନାଟ୍ୟକାର || ଏଇଠୁ ଦେଖିନେବା ।

ଶେଲୀ || ଡ୍ରାଇଭର, ଗାଡ଼ି ରୋକୋ !

[ ନିର୍ଦ୍ଦେଶକ ଗାଡ଼ି ରଖି, କାଳ୍ପନିକ ଦୁଆର ଖୋଲି wings ପାଖକୁ ଯାଇଛି । ହଠାତ୍ ଗାଡ଼ି ଅଟକିବା ନେଇ, କାଳ୍ପନିକ ଗାଡ଼ିରୁ ଓହ୍ଲାଇ ନାଟ୍ୟକାର ଓ ଶେଲୀ ଅନ୍ଧାର ଆଡ଼କୁ ଯାଉ ଯାଉ ]

ଶେଲୀ || ଅନ୍ଧାରଟା ବଢ଼ିଆ...

ନାଟ୍ୟକାର || ମୁହଁକୁ ମୁହଁ ଦିଶୁନି...

ଶେଲୀ || ଆଃ !

ନାଟ୍ୟକାର || କ'ଣ ହେଲା... ?

ଶେଲୀ || କଣ୍ଟାଟେ... !

ନାଟ୍ୟକାର ॥ ( ହସି ହସି ) ବୁଝିବା ଆରମ୍ଭ ହେଉଛ; କଣ୍ଟା ପଶିଲାଣି ଗୋଡ଼ରେ ?

ଶେଲି ॥ ( ହଠାତ୍ ) ଆଚ୍ଛା, ଗୋଟାଏ କଥା ।

ନାଟ୍ୟକାର ॥ କ'ଣ ?

ଶେଲି ॥ ମୋ' ଉପରେ ଆପଣଙ୍କର ଧାରଣା କ'ଣ ?

ନାଟ୍ୟକାର ॥ ( ଟିକିଏ ଚାହିଁରହି... ) ଗୋଟିଏ ଝିଅ ବୋଲି ।

ଶେଲି ॥ ଖାଲି ସେତିକି ?

ନାଟ୍ୟକାର ॥ ଆଉ ଅଧିକା କ'ଣ ଚାହୁଁଛ ? ଝିଅ... ମାନେ... ଝିଅ...

ଶେଲି ॥ ( ରୁଷ୍ଟ, ଅଭିମାନର ସ୍ୱର ) ନାଟ୍ୟକାରଙ୍କ ମୁହଁରୁ ଆଉ କିଛି ଅଧିକା ଆଶା କରୁଥିଲି । ଆପଣମାନେ କ୍ୟାରେକ୍‌ଟରର study କରନ୍ତି ।

ନାଟ୍ୟକାର ॥ ଆଉ କ'ଣ ଅଧିକା ଶୁଣିବ ?

ଶେଲି ॥ ମୁଁ ଗୋଟାଏ ଝିଅ, ଏକଥା ଆପଣଙ୍କଠୁ ମୁଁ ବେଶୀ ଜାଣେ ।

ନାଟ୍ୟକାର ॥ ଅବଶ୍ୟ, ଗୋଟିଏ ଝିଅ ନିଜକୁ ଯାହା ଜାଣେ ସେତିକି !

ଶେଲି ॥ ପୁଅ ମାନେ କ'ଣ ଝିଅ ମାନଙ୍କୁ ଅଧିକା ଚିହ୍ନନ୍ତି ?

ନାଟ୍ୟକାର ॥ ନ ଚିହ୍ନିଲେ ବି ଚିହ୍ନିଲା ଭଳି ବଡ଼ ବଡ଼ କଥା କହନ୍ତି ।

ଶେଲି ॥ ଆପଣ କ'ଣ ଚିହ୍ନିଲେ ?

ନାଟ୍ୟକାର ॥ କହିଲିନା ଗୋଟେ ଝିଅ ବୋଲି ! ଝିଅଙ୍କର ତୁଳନା ନାହିଁ, ଗୋଟାଏ ଝିଅକୁ ମୁଁ କେବଳ ଝିଅ ବୋଲି ଜାଣେ, ଗୋଟାଏ ଅଧିକା କିମ୍ବା ଊଣା ନୁହେଁ ।

ଶେଲି ॥ ( ନାଟ୍ୟକାରଙ୍କ କାନ୍ଧରେ ଏକ ମୃଦୁ ଚାପୁଡ଼ା ଦେଇ ) ଓଃ ! ଏତେ ସବୁ କଥା ମୁଁ ଆପଣଙ୍କ ଠାରୁ ଶୁଣିବାକୁ ଚାହେଁନା, ମୋ' ସମ୍ପର୍କରେ ଆପଣଙ୍କର ଧାରଣା କ'ଣ ? ମତେ ଦେଖିଲେ କେମିତିକା ଝିଅ ବୋଲି ଆପଣଙ୍କର ମନେ ହୁଏ ।

ନାଟ୍ୟକାର ॥ ସବୁ କଥା କ'ଣ କୁହାଯାଏ ?

ଶେଳୀ ।। କୁହନ୍ତୁ, ପ୍ଲିଜ୍ !

ନାଟ୍ୟକାର ।। କ'ଣ ନାଟ୍ୟକାରଙ୍କ ମନ୍ତବ୍ୟ ଶୁଣିବାରେ ଆଗ୍ରହ ?

ଶେଳୀ ।। ଓଃ ! ଘୃଣ ଫୁଟାଣି !!

ନାଟ୍ୟକାର ।। ଥରେ ଅଧେ ଲୁଖ୍ୟାଣ ମୁହଁରୁ ରକ୍ଷା ପାଇଥିବା କୁକୁଡ଼ା ଭଳି, ପ୍ରତିଟି ପାଦ ମପାଚୁପା... ସତର୍କ !!

ଶେଳୀ ।। ମାନେ ? ବୁଝି ପାରିଲନି...!!

ନାଟ୍ୟକାର ।। ମାନେ... ତମେ ବେଶ୍ ଏକ ଭଲ ଝିଅ...

ଶେଳୀ ।। ନଚେତ ଭଲ ଲାଗିଲାଭଳି ସୁନ୍ଦର ସୁନ୍ଦର କଥା କହିବା ପାଇଁ ମୁଁ ଆପଣଙ୍କୁ କହନ୍ତି । ନଚେତ ଭଲ ଝିଅ ବୋଲି କେହି କହନ୍ତିନି ଏକଥା ମୁଁ ଜାଣେ...

ନାଟ୍ୟକାର ।। ତମେ ଯେଉଁମାନଙ୍କ କଥା କହୁଚ ସେମାନଙ୍କ ଆଖିରେ ମୁଁ ତମକୁ ଦେଖିନି । ମୁଁ ଏଇ ଦୁଇ ସ୍ବର ଧ୍ବନିର ଜଣାଶୁଣା ଭିତରେ ଯାହା ଲକ୍ଷ୍ୟ କରୁଛି...

ଶେଳୀ ।। ତା' ଭିତରେ ଭଲ ଝିଅ ବୋଲି ଜାଣି-ପକେଇଲେ ?

ନାଟ୍ୟକାର ।। ହଁ ତ !

ଶେଳୀ ।। ଏଇ ଯେ... ଏଇ ଅନ୍ଧାର ଭିତରେ ତମର ହାତଧରି ମୁଁ ଏମିତି ବୁଲୁଚି... ଏଇଥିରୁ କ'ଣ ଜାଣି ହେଉନି ମୁଁ ଖରାପ ବୋଲି ?

ନାଟ୍ୟକାର ।। କାହିଁକି ? ଏଥିରେ ଖରାପ ଭାବିବାର କ'ଣ ଅଛି ? ଠିକଏ ଘନିଷ୍ଠ ହୋଇ ହଟିବା କ'ଣ ଖରାପ ?

ଶେଳୀ ।। ଆପଣ ବୋଲି ଏ କଥା କହିଲେ... ଅନ୍ୟ କିଏ ହୋଇଥିଲେ...

ନାଟ୍ୟକାର ।। ନା, ମୋ ମତରେ ଏ ବୁଲା ଖରାପ ନୁହେଁ ।

ଶେଳୀ ।। ମୋ' ବିଷୟରେ ଆଗରୁ କିଛି ଗୁଜବ ଶୁଣି ନାହାନ୍ତି ?

ନାଟ୍ୟକାର ।। ଗୁଜବ ? ଗୁଜବ କହିବା ତ ଲୋକଙ୍କ ପ୍ରକୃତି ।

ଶେଳୀ ।। ତଥାପି... କ'ଣ ଶୁଣିଛନ୍ତି... ପ୍ଲିଜ୍... କୁହନ୍ତୁ...

ନାଟ୍ୟକାର ।। ଏ ସହରର ଡାକବଙ୍ଗଳା, ରେଷ୍ଟ ହାଉସ୍··· ଥ୍ରୀ ଷ୍ଟାର ଲଜ
ସବୁ ତନ୍ନ କଥା କୁହନ୍ତୁ···

ଶେଲୀ ।। ଆଚ୍ଛା ?

ନାଟ୍ୟକାର ।। ଘଜଦାଣ୍ଡର ମସ୍ତ, ଓଳା ଓ ଭଙ୍ଗା କୁଡ଼ିଆ ସବୁ···

ଶେଲୀ ।। ଆଚ୍ଛା ?

ନାଟ୍ୟକାର ।। ସମୁଦ୍ରକୂଳର ବାଲି ଓ କଫି ହାଉସ···

ଶେଲୀ ।। ମୁଁ ସେଇଠିକି ସବୁ ଯାଏ ବୋଲି··· ?

ନାଟ୍ୟକାର ।। ହଁ,

ଶେଲୀ ।। ଇସ୍ ! ମୋ' ଉପରେ କି ଖରାପ ଧାରଣା ହୋଇନଥିବ
ଆପଣଙ୍କର !

ନାଟ୍ୟକାର ।। ( ହସିଲେ ) କାହିଁକି ?

ଶେଲୀ ।। ଆପଣ ସେସବୁ ବିଶ୍ୱାସ କରିଗଲେଣି ?

ନାଟ୍ୟକାର ।। ବିଶ୍ୱାସ କରିବି କାହିଁକି ? ତା' ହେଲେ ତମ ବିଷୟରେ
ଦୁ' ଦୁ'ଟା ଗପ ଓ କବିତା ଲେଖି ନଥାନ୍ତି !!

ଶେଲୀ ।। ( ଖୁସି ହୋଇ ) ଏଁ ! ମୋ' ବିଷୟରେ କବିତା
ଲେଖିଛନ୍ତି ? କାହିଁ··· ଦେଖି··· !

ନାଟ୍ୟକାର ।। ଫେରିଲେ··· ଡାକବଙ୍ଗଳାରେ ଡାଏରୀ ଦେଖିବ···

ଶେଲୀ ।। ଆପଣଙ୍କୁ ଦେଖିଲେ ମୋ'ର ତୁଷାର କଥା ମନେ ପଡ଼େ···

ନାଟ୍ୟକାର ।। ତୁଷାର ? ତୁଷାର କିଏ ?

ଶେଲୀ ।। ତୁଷାର··· ଯିଏ ହିମାଳୟ ପରି ଶୀତଳ ନୁହେଁ··· ଉଷ୍ଣ-
ପ୍ରସ୍ରବଣ ପରି ଉତ୍ତପ୍ତ··· ପ୍ରତିଦିନ ମୋ' ପାଇଁ କବିତା
ଲେଖେ··· ଆଜି ଆଜି କବିତା··· ତା'ପରେ ଦେଖା-
ହେଲେ ଗପୁଥିବ··· ଅଜସ୍ର··· ଘଣ୍ଟା ଘଣ୍ଟା ଧରି···

ନାଟ୍ୟକାର ।। ବିସ୍ମୟ !! ଗଲା କୁଆଡ଼େ ?

ଶେଲୀ ।। ଶୁଣିଲି ପାଗଳ ହୋଇଯାଇଛି··· ବାହା ସାହା ହୋଇ···
ପିଲା ଛୁଆ ଜଞ୍ଜାଳ ସହି ପାରିଲାନି··· ସ୍ୱପ୍ନ ଦେଖୁଥିବା

ପ୍ରେମିକଟିଏ··· କଅଁଳିଆ ମନ··· ବାସ୍ତବତା ସହି ପାରେନା··· ( ଶୁଖିଲା ହସ ହସିଲା··· )

ନାଟ୍ୟକାର ॥ ଆହା··· ବିଚରା··· !!

ଶେଲି ॥ ଠିକ୍ ସେମିତି ଆପଣ··· !

ନାଟ୍ୟକାର ॥ ମୁଁ··· !!

ଶେଲି ॥ ଆପଣ ଏତେ ଭଲ ବୋଲି ଆପଣଙ୍କ ହାତଧରି ଏତେ ସମସ୍ତ ହେଲି ମୁଁ ଏକୁଟିଆ ଠିଆ ହୋଇ ପାରିଚି । ରବିବାବୁଇ କମ୍ବା ସିଦ୍ଧାର୍ଥ ବାବୁ ହୋଇଥିଲେ···

ନାଟ୍‌ଂକାର ॥ ରବିବାବୁ ଓ ସିଦ୍ଧାର୍ଥବାବୁ ଉଭୟେ ତମର ପୂର୍ବ ପରିଚିତ, ସେମାନଙ୍କ ସମ୍ପର୍କରେ ମୁଁ କିଛି ନ କହିବା ଉଚିତ !

ଶେଲି ॥ ସେମାନଙ୍କ ଠାରୁ ଆପଣଙ୍କୁ ମୁଁ ବେଶୀ ବିଶ୍ୱାସ କରେ ।

ନାଟ୍ୟକାର ॥ ମୋର ଖୁସି ହେବା ଉଚିତ ।

ଶେଲି ॥ ବିଶ୍ୱାସ କରନ୍ତୁ··· ଜୀବନରେ କୋଉଦିନ ଭାବି ନ ଥିଲି··· ଆପଣଙ୍କ ଭଳି ଜଣେ ବିଖ୍ୟାତ ନାଟ୍ୟକାରଙ୍କର ହାତ ଧରି ଏମିତି ଠିଆ ହୋଇ ପାରିବି ବୋଲି···

ନାଟ୍ୟକାର ॥ ଜଣେ ବିଖ୍ୟାତ ନାଟ୍ୟକାର ହିସାବରେ ତମ ସାଙ୍ଗରେ ମୁଁ ଗପୁନି··· ମୁଁ ଏଇଠି ଜଣେ ସାଧାରଣ ମଣିଷ··· କହାଁତି ସାଧାରଣ ମଣିଷ···

ଶେଲି ॥ ସାଧାରଣ ଲୋକଙ୍କୁ ମୋର ବେଶୀ ଡର ।

ନାଟ୍ୟକାର ॥ ଭୁଲ କହିଲ ! ତମ ଘରପଟେ ଗୁଡ଼ାଏ ଅସାଧାରଣ ଲୋକଙ୍କ ଭିଡ଼ ବୋଲି ତମର ଦୁଶ୍ଚିନ୍ତା··· ସାଧାରଣ ମଣିଷକୁ ଡରିବାର କିଛି ନାହିଁ ।

ଶେଲି ॥ ଅଚ୍ଛା, ଗୋଟାଏ କଥା ପଚାରିବି ?

ନାଟ୍ୟକାର ॥ ପଚାର,

ଶେଲି ॥ ରାଗିବେନି ?

ନାଟ୍ୟକାର ॥ ନ ପଚାରିଲେ କେମିତି କହିବି ?

[ ଠିକ୍ ଏଇ ମୁହୂର୍ତ୍ତରେ ଡ୍ରାଇଭର କହିଲା··· ]

ନର୍ଦ୍ଦେଶକ ॥ ବାବୁଜୀ ଜଲ୍‌ଦି ଚଲିୟେ ! ରାତ୍ ଜ୍ୟାଦା ହୋ ଗୟା··· )

[ ସିଟ୍ ଗୁଡ଼ିକ ପଟାପଟ୍ କରି ରଖିଲା··· ଓ ନଜେ ଠିଆହେଲା ]

ଶେଲୀ ॥ ଡ୍ରାଇଭର ଡାକିଲାଣି ।

ନାଟ୍ୟକାର ॥ ଫେରିବା ପାଇଁ ଆଦୌ ଇଚ୍ଛା ହେଉନି ।

ଶେଲୀ ॥ କାଲି ଜନ୍ମ ଆପଣ ଖୁବ୍ ଗମ୍ଭୀର ଥିଲେ । ମୁଁ ଡରି ଯାଇଥିଲି ।

ନାଟ୍ୟକାର ॥ କାଲି ଆଉ ଆଜି ଭିତରେ ଅନେକ ଫରକ ।

ଶେଲୀ ॥ କେତେ ଫରକ ?

ନାଟ୍ୟକାର ॥ (ଶେଲୀକୁ ପାଖକୁ ଟାଣି ଆଣି) ଅ-ନେ-କ, ଅ-ନେ-କ···!!

ଶେଲୀ ॥ ( ଘୁଞ୍ଚି ଆସି ) ଡ୍ରାଇଭର ଦେଖୁଛି···

ନାଟ୍ୟକାର ॥ ଏ ଅନ୍ଧାର ଆଉ ଖୋଜିଲେ ବି ମିଳିବନି !

ଶେଲୀ ॥ ଆଉ, ପରେ, ପିବା ଚାଲ ।

[ ଉଭୟେ ଯାଇ ନଜ ନଜ ସ୍ଥାନରେ ବସିଲେ ଫେରିବା ଦିଗକୁ ଅର୍ଥାତ୍ ଦର୍ଶକ ମାନଙ୍କୁ ପଛ କରି ସମସ୍ତେ ବସିଲେ ଓ ପୂର୍ବଭଳି ଗାଡ଼ି ଚଳେଇ ଚାଲିଲା ନର୍ଦ୍ଦେଶକ ଓରଫ୍ ଡ୍ରାଇଭ··· । ମଞ୍ଚ ଅନ୍ଧାରରେ ହେଲା··· ପୁନଃ ଆଲୋକିତ ହେଲା ବେଳକୁ ରବିଦାସ ବସିଛି ଗୋଟାଏ କୋଣରେ ଚେୟାର ଉପରେ । ହାତରେ ବୋତଲ୍ ଓ ସେ ନଜେ ପ୍ରାୟ ନଶା ଭିତରେ ବୁଡ଼ିଛି । ପଛରୁ ଆସିଛି ଶେଲୀ... ]

ରବିଦାସ ॥ ଶେଲୀ !

ଶେଲୀ ॥ ରବି ଭାଇ । ଏଇଠି ବସିଛ ?

ରବିଦାସ || ଅନେକ ସମସ୍ତ ଧରି, ଗାଡ଼ି ନେଇ କୁଆଡ଼େ ଯାଇଥିଲ ?

ଶେଲି || ଖଲିକୋଟ ଘାଟି ପର୍ଯ୍ୟନ୍ତ ।

ରବିଦାସ || ସାଙ୍ଗରେ ନାଟ୍ୟକାର ?

ଶେଲି || ହୁଁ, ଏଇଠି··· ଏଇ ଝାପସା ଅନ୍ଧାରଟାରେ ଏକା ଏକା କଣ କରୁଛ ?

ରବିଦାସ || ଅନ୍ଧାର ହିଁ ଭଲ ଲାଗୁଛି, ଏଇଠି ବସ୍ ଶେଲି ।

ଶେଲି || ( ନ ବସି ପଡ଼ି ) କିଛି କହିବ ?

ରବିଦାସ || ତୋ' ପାଖରେ ଏମିତି ଦେହକୁ ଦେହ ଘଷାଘଷି ହୋଇ ବସିବାକୁ ଭଲ ଲାଗୁଛି ।

ଶେଲି || କିଛି କହିବ ?

ରବିଦାସ || କାହିଁକି କେଜାଣି ତୃପ୍ତି କଥା ଆଜି ଖୁବ୍ ମନେ ପଡ଼ୁଛି । ଆଉ ତୃପ୍ତି ବଦଳରେ ତତେ···

ଶେଲି || ତୃପ୍ତି ଅପା ତ ଅନେକ ଦିନରୁ ବାହା ହୋଇ ଗଲାଣି । ଆଜି ଏମିତି ଛ' ବର୍ଷ ପରେ ତା' କଥା ମନେ ପକାଇ ଲାଭ କ'ଣ ?

ରବିଦାସ || ମଣିଷ ବଡ଼ ଅଦ୍ଭୁତ ଜନ୍ତୁ ଶେଲୀ । ସେ ଅନ୍ୟକୁ ଠକେନା ନିଜକୁ ବି ଠକେନା···

ଶେଲି || ତମେ ଠିକ କହୁଛ ରବିଭାଇ !

ରବିଦାସ || ତୃପ୍ତିକୁ ମୁଁ ଜାଣି ଜାଣି ହରେଇଛି··· ମୁଁ ଜାଣେନା ତତେ ସିଏ କହିଚନ୍ତି କି ନାହିଁ··· ତୁ' ସେତେବେଳେ ଫ୍ରକ୍ ପିନ୍ଧା ଗ୍ରେଟ ଝିଅ !

ଶେଲି || ତୃପ୍ତି ଅପା ମତେ ସବୁ କହେ ।

ରବିଦାସ || ତା' କଥା ମନେ ପଡ଼ିଲେ ମତେ ଦୋଷୀ ଭଳି ଲାଗେ···

ଶେଲି || ତା' କଥା ମତେ କହି ଲାଭ କ'ଣ ରବିଭାଇ ! ଆଜି ସୁଦ୍ଧା ତମର ତୃପ୍ତି ଅପାକୁ ଭୁଲିଯିବା ଉଚିତ ଥିଲା ।

ରବିଦାସ || ମୁଁ ପାରୁନି ।

ଶେଲି ॥ କିନ୍ତୁ ଭୁଲିବା ଛଡ଼ା ଆଉ ଉପାୟ କ'ଣ ?

ରବିଦାସ ॥ ତୁ' କ'ଣ ମୋ ପାଇଁ ଡ଼ଲି ହୋଇ ପାରିବୁନି ?

ଶେଲି ॥ ମାନେ ?

ରବିଦାସ ॥ ସେ ଦାୟିତ୍ୱଟା ତୁ' ନେ···

ଶେଲି ॥ କୋଉ ଦାୟିତ୍ୱଟା ?

ରବିଦାସ ॥ ଡ଼ଲିକୁ ଭୁଲେଇବା ଦାୟିତ୍ୱ ।

ଶେଲି ॥ ସେଇଟା ସମ୍ଭବପର ନୁହେଁ ।

ରବିଦାସ ॥ ( ଶେଲୀକୁ ଜଡ଼ାଇ ଧରିଲେ ) ସେଇଥିପାଇଁ କହୁଥିଲି··· ମଣିଷ ଖୁବ୍ ଅଦ୍ଭୁତ ! ତତେ ଯେ ମୁଁ ଖୁବ୍ ପିଲାଦିନୁ ଦେଖିଚି ସେଇଟା ମନେ ପଡ଼ୁନି ଏଇକ୍ଷଣି··· ଡଲିର ମୁହଁଟା··· ଡଲିର ସବୁ ସ୍ମୃତି ତୋ' ଭିତରେ ହିଁ ଦେଖିବାକୁ ପାଉଛି··· ସେଇଥିପାଇଁ କହୁଥିଲି ତୁ' ଚାହିଁଲେ ମୁଁ ଡ଼ଲିକୁ ଭୁଲି ଯାଇ ପାରିବି···

ଶେଲି ॥ ଛି··· ରବି ଭାଇ !! ( ଧୁକ୍କେଇ ଦେଇଚି ପ୍ରାୟ ଧକ୍କା ଦେଲା ଭଳି )

ରବିଦାସ ॥ ତୋ ଗୋଡ଼ ତଳେ ପଡ଼ୁଛି ଶେଲୀ ।

ଶେଲି ॥ ( ଚିତ୍କାର କରି ) ଚୁପ୍ କର ! ଲାଜ ମାଡୁନି ଏ କଥା କହିବାପାଇଁ ? ଆଜି ମୋ' ପାଖରେ ଏଡ଼ ମିଛ ଅଭିନୟ ଦେଖାଉଚ ! ଲାଜ ମାଡୁନି ସେ ଦିନର କଥା ମନେ ପଡ଼ିଲେ ? ସେ ଦିନ ଯେମିତି ଗୋଟାଏ ଝିଅକୁ ଇତର ପରି ପ୍ରତ୍ୟାଖ୍ୟାନ କରି ଦେଇଥିଲ !!

ରବିଦାସ ॥ ଶୁଣ ଶେଲୀ··· ମୋ କଥା ଶୁଣ୍ ! ( ପୁଣି ଧରିବାକୁ ଚେଷ୍ଟା କଲା )

ଶେଲି ॥ କିଛି ଶୁଣିବାକୁ ଚାହେଁନା··· ମୁଁ ତୁମକୁ ବିଶ୍ୱାସ କରେନା··· ତୁମକୁ ସେ ଆଖିରେ ମୁଁ କେବେ ଦେଖିନି··· ଦେଖିବିନି ମଧ୍ୟ ! ( ଖୁଲିଗଲା ନିଜକୁ ମୁକ୍ତ କରି··· )

ରବିଦାସ ॥ ଶେଲୀ··· ପ୍ଲିଜ୍ ! ଶୁଣି ଯା' ···

ଶେଲୀ ॥ ( ଦୂରରୁ ) କିଛୁ ଶୁଣିବନି· ତମେ ମାତାଲ ହେଇ ଯାଇଚ··· ତମ ଭିତରେ କିଛୁ ନାହିଁ···!!

[ ଚାଲିଗଲା ଦୂରକୁ । ଆଲୋକ ଲିଭି ଆସିଲା ବେଳକୁ ହଠାତ୍ ସିଦ୍ଧାର୍ଥ ପଶି ଆସିଲେ । ପୁଣି ଆଲୁଅ ଜଳିଲା ]

ସିଦ୍ଧାର୍ଥ ॥ ଆଚ୍ଛା, ଡିରେକ୍ଟର ସାହେବ··· if you don't mind··· ଏଇଠି ଗୋଟାଏ ସଜେସନ···!

ରବିଦାସ ॥ କ'ଣ ?

ସିଦ୍ଧାର୍ଥ ॥ ଅବଶ୍ୟ, ମୋ'ର କିଛୁ କହିବା କଥା ନୁହେଁ··· ତମ ଗେଲ୍‌ଟା ତମେ ନିଶ୍ଚୟ ଭଲ କରୁଚ··· ତେବେ, ଏଇ ଯାଗାଟାରେ ତମର ପୁଟ୍ ମାତାଲ୍ ହେଇ ଶେଲୀର ଗୋଡ଼ ତଳେ ପଡ଼ିପିବା କଥା ଉଚିତ ହେଲା ?

ରବିଦାସ ॥ ହେଃ ! ଆପଣ ବସିଲେ···

ସିଦ୍ଧାର୍ଥ ॥ ଦେଖ, ସେ ଦିନ ଡାକ ବଙ୍ଗଳାରେ କିନ୍ତୁ ତମେ ତାର ଗୋଡ଼ ତଳେ ପଡ଼ିଥିଲ ବୋଲି ଶେଲୀର ମୁହଁରୁ ପରେ ଆମେ ଶୁଣିଛୁ···

ରବିଦାସ ॥ ଠିକ୍ ଅଛି । ଷ୍ଟେଜରେ ଦେଖିବା··· ଏଇକ୍ଷଣି ସେମିତି ଗଲୁ ।

ସିଦ୍ଧାର୍ଥ ॥ ଓ. କେ. ଓକେ !! next sequence !

ରବିଦାସ ॥ ( ପାଣ୍ଡୁଲିପି ପଢ଼ି··· ) ତା'ପର ଦିନ ସକାଳ···

ନାଟ୍ୟକାର ॥ ( ପ୍ରବେଶ କରି ) କୋଉ sequenceଟା ପଡ଼ୁଚ ?

ରବିଦାସ ॥ ସେଇ ସକାଳେ··· ତମର ଓ ଶେଲୀର··· development sceneଟା···

ନାଟ୍ୟକାର ॥ ମୁଁ ବୋଧହୁଏ ନାଟକଟା ଲେଖୁଚି ?

ସିଦ୍ଧାର୍ଥ ॥ ଲେଖ, Yes start !!

[ ନାଟ୍ୟକାର ସେଇଠି କାଗଜ କଲମ ନେଇ ବସିଲେ, ରବିଦାସ ଓ ସିଦ୍ଧାର୍ଥ ପୁଞ୍ଜିଗଲେ··· ଆବହ ସଙ୍ଗୀତ··· ]

ଶେଲୀ || ( କପେ ଚା' ନେଇ ପ୍ରବେଶ କରନ୍ତି । ଚା' ରଖିଦେଇ…)
ଖୁବ୍ ଜଲ୍ଦି ତମର ଚା' ଦରକାର ହବ ।

ନାଟ୍ୟକାର || ବାଃ ! ମୋ' ମନ କଥା କେମିତି ଜାଣିଲ ?

ଶେଲୀ || ଜାଣିଲି ।

ନାଟ୍ୟକାର || ( ଟିକିଏ ଚାହିଁ ରହି ) ସୁନ୍ଦର ।

ଶେଲୀ || କ'ଣ ?

ନାଟ୍ୟକାର || ତମେ ଆଜି ଖୁବ୍… ମାନେ…

ଶେଲୀ || ଭଲ ଦିଶୁଛି ?

ନାଟ୍ୟକାର || ଅଦ୍ଭୁତ !! ( ଶେଲୀକୁ ଟାଣି ଆଣିବାପାଇଁ ଗଲେ; ଶେଲୀ ଆସିଲା… )

ଶେଲୀ || ମୋ' ଉପରେ ରାଗିଛ ?

ନାଟ୍ୟକାର || କାହିଁକି ?

ଶେଲୀ || କାଲି ଅନ୍ଧାରରେ ଠିଆ ହେବାପାଇଁ କହୁଥିଲ; ମୁଁ ମନା କଲି ।

ନାଟ୍ୟକାର || ସେଥିପାଇଁ ରାଗିବି କାହିଁକି ?

ଶେଲୀ || କେଜାଣିରେ ବାବା ନାଟ୍ୟକାରମାନେ ଭୀଷଣ ରାଗି ଲୋକ ତ… !!

ନାଟ୍ୟକାର || ସିଦ୍ଧାର୍ଥ ଆଉ ରବିଦାସ ?

ଶେଲୀ || ଓଙ୍କା ନେଇ ଚିଲିକାରେ ବୁଲୁଛନ୍ତି… ପକ୍ଷୀ ଦେଖୁଛନ୍ତି… ଯାଯାବର ପକ୍ଷୀଙ୍କ ଭିଡ ।

ନାଟ୍ୟକାର || ଆସ ଘର ଭିତରକୁ ଯିବା ।

ଶେଲୀ || ମୁଁ ଟିକିଏ ଡ୍ରେସେଇ ହୋଇ ଆସେ… (ହସିଦେଇ ଚାଲିଗଲା)

ନାଟ୍ୟକାର || ଶେଲୀ… ପ୍ଲିଜ୍ !! ମୁଁ ଲେଖିପାରୁନି ଆଉ…

ଶେଲୀ || ଆସୁଚି… ନାଟ୍ୟକାରମାନେ ଏମିତି ଦୁର୍ବଳ ହେଲେ ଚଳିବ ?

ନାଟ୍ୟକାର || ଶେଲୀ !! ( ସ୍ୱର କର୍କଶ ଶୁଭୁଛି ) ଅଲ୍‌ରାଇଟ୍ !! ଶାଲି ବଜ୍ଜାତ୍ ଟୋକୀ ! ମୋ' ସାଙ୍ଗରେ ଖେଳୁଚ…

[ ନାଟ୍ୟକାର ସେଇଠୁ ଉଠି ଆସି ଦୂରକୁ ଚାହିଁ ରହୁଛନ୍ତି । ମନେ ମନେ ଉତ୍ତେଜିତ, ହାତରେ ସିଗାରେଟ୍ । ପଛରୁ ଆସିଚି ଶେଲି ]

ଶେଲି ।। ମୋ' ଉପରେ ରାଗିଛ ?

ନାଟ୍ୟକାର ।। ରାଗିବା ପାଇଁ ମୁଁ କ'ଣ ଠିକା ନେଇଚି ?

ଶେଲି ।। ଛି, ସୁନାଟା ପରା… ଆସ… ( ହାତ ଧରିଚି )

ନାଟ୍ୟକାର ।। ଛାଡ଼ ( ହାତ ଛୁଆଡ଼ି ଦେଇଚି )

ଶେଲି ।। ନାଟ୍ୟକାର !

ନାଟ୍ୟକାର ।। ପୁଣି ଆରମ୍ଭ ହେଲା ? ( ତା' ଆଖିରେ ହିଂସ୍ରତା )

ଶେଲି ।। ତମେ… ତମେ…

ନାଟ୍ୟକାର ।। (ଖୁବ୍ ଜୋର୍‌ରେ ଚାପୁଡ଼ାଏ ମାରି) ଗେଟ୍ ଆଉଟ୍ ୟୁ ବିଚ୍ !

[ ତା'ପରେ ଧକ୍କା ଦେଇ ପକାଇ ତାକୁ ଖିନ୍ ଭିନ୍ କରି ମାରିଚି… ! ଠିକ୍ ସେତିକିବେଳେ ସିଦ୍ଧାର୍ଥ ଓ ରବିଦାସ ଫେରିଛନ୍ତି ଚଲଙ୍କାରୁ ]

ରବିଦାସ ।। ଆରେ… ଆରେ… ଯେତ୍ତୁ କ'ଣ କରୁଛ ନାଟ୍ୟକାର ? ତାକୁ ମାରୁଚ କାହିଁକି ?

ନାଟ୍ୟକାର ।। ହଁ… ହଁ, ତା'ର ଜାନ୍ ନେଇଯିବ ଆଜ !!

ସିଦ୍ଧାର୍ଥ ।। କ'ଣ ? ହେଇଚି କ'ଣ ରବିବାବୁ ? ମୁଁ ତ କିଛି ବୁଝି ପାରୁନ !

ନାଟ୍ୟକାର ।। ତାକୁ ପଚାର, ମୋ' ସାଙ୍ଗେ ଖେଳୁଚି… ମୁଁ ଭୁଆଡ଼େ ଦୁର୍ବଳ…!!

( ଚାଲିଗଲା ଭିତରକୁ… )

ରବିଦାସ ।। ତୁ' ବସ୍ ଶେଲୀ !

ଶେଲି ।। ଚୁପ୍ କର ତମେ ! ( ସିଦ୍ଧାର୍ଥକୁ ) ମତେ ଟିକିଏ ରମ୍ ଦେଇ ପାରିବେ ? ( କିନ୍ତୁ ଶେଲୀ ସିଦ୍ଧାର୍ଥ ହ୍ୟାଣ୍ଡ ବ୍ୟାଗ୍‌ରୁ ଗୋଟାଏ ବୋତଲ ବାହାର କରି ଆଣି ଢକ୍ ଢକ୍ କରି ପିଇଗଲା । )

ରବିଦାସ ॥ ଛୁ, ଶେଲୀ ! ଏମିତ ଉତ୍ତ୍ୟକ୍ତ ହେଇ ଯିଇବା ଉଚିତ ନୁହେଁ ।

ଶେଲୀ ॥ ( ସେ ବର୍ତ୍ତମାନ ସଂପୂର୍ଣ୍ଣ ଏକ ଅପ୍ରାକୃତିକ ଅବସ୍ଥାରେ ଅଛି । ଅନେକ ଦିନ ଧରି ଅନେକ ପୁରୁଷଙ୍କ ଅତ୍ୟାଚାର ସହି ସହି ସେ ଯେମିତି ଆଜ ହଠାତ୍ ବିଦ୍ରୋହୀ ହେଇ ଉଠିଛି । ତା' ମୁହଁରେ ସେଇ ବିଦ୍ରୋହର ତୀବ୍ରତା )

ସ୍ଟୁ ସଟ୍ ଅପ୍ ! କେତେ ଗୁଡ଼ାଏ ଲମ୍ପଟ, ଦୁଶ୍ଚରିତ୍ର ଆସି ମୋର ରକ୍ତହନ୍ତୁ ମତେ ! ବାହାରି ଯାଆନ୍ତୁ ମୋ' ସାମନାରୁ ! ଚୁପ୍ ହେଇ ପିକ୍‌ନିକ୍ କରି ଆସିଛନ୍ତି... ମତେ ଦେଖିଲେ କୁଆଡ଼େ ନାଟ୍ୟକାରର ମୁଡ୍ ଆସିଯିବ । ଆଉ ଜନକଣ ମିଶି ମତେ ଏଇଠି ରେଷ୍ଟୁରାଣ୍ଟରେ ଖାଇବାକୁ ବସିଛନ୍ତି । ମୋର ହିରୋଇନ୍ ହବା ଦରକାର ନାହିଁ... ଯଥେଷ୍ଟ ହେଇଗଲା । ଏହା ଅପେକ୍ଷା ବେଶ୍ୟାବୃତ୍ତି କରିବା ହଜାର ଗୁଣରେ ଭଲ । ତମ ଭଳି ଡ଼ାହାଳ କୁକୁର ଗଣ୍ଡା ଗଣ୍ଡା ଆସି ପାଦତଳେ ପଡ଼ିବ ।

[ ଶେଲୀ ଆଉ କିଛି କହି ପାରିଲା ନାହିଁ । ସେଇ ଚେୟାର ଉପରେ ମୂର୍ଚ୍ଛିତା ହୋଇ ପଡ଼ିଗଲା ଓ ତାକୁ ସିଦ୍ଧାର୍ଥ ଓ ରବିଦାସ ନେଇଗଲେ । ମଞ୍ଚ ଉପରକୁ ବର୍ତ୍ତମାନ ଆସିଲେ ନିର୍ଦ୍ଦେଶକ ]

ନିର୍ଦ୍ଦେଶକ ॥ ନା, ହେଲନାହିଁ । Ladies and Gentlemen ! ଆପଣମାନେ ହୁଏତ ହତାଶ ହେଇଥିବେ... କ୍ଲାଇମାକ୍ସଟା ଠିକ୍ ଜମିଲ ନାହିଁ । ଠିକ୍ ଅଛି; ଆଉ ଗୋଟାଏ ଅଧେ ରିହାରସଲ୍ ଦରକାର । ତା'ପରେ ଦେଖିବେ ଠିକ୍ ହବ । ଏହା ଭିତରେ ନାଟ୍ୟକାରଙ୍କୁ କହିବା, ସେ ପାଣ୍ଡୁଲିପିଟା ରିଭାଇଜ୍ କରନ୍ତୁ...

[ ଭିତରୁ କଥା ହେଇ ଆସିଲେ ସିଦ୍ଧାର୍ଥ, ନାଟ୍ୟକାର ଓ ଶେଲୀ । ଶେଲୀ ନାଟ୍ୟକାରଙ୍କୁ କହୁଥାଏ... ]

ଶେଲି ॥ ମୁଁ ମନେ ମନେ ଠିକ୍ କରିଥିଲି ତମ ଶବଙ୍କୁ ଖାଙ୍କ ବି··· ତମ ଭିତରେ ଥିବା ନାଟ୍ୟକାରର ଅହଂକାରକୁ ଖର୍ବ ସିଦ୍ଧାର୍ଥବାବୁ ତମ୍ଭା ଅନ୍ୟ ପାଞ୍ଚଜଣ ପୁରୁଷଙ୍କ ସହିତ ସମାନ କରିଦେବି ବୋଲି ମୁଁ ଭାବିଥିଲି ଏବଂ ଆରମ୍ଭ କରିଥିଲି ମୋର ଖେଳ···

ରବିଦାସ ॥ ( ନାଟ୍ୟକାରଙ୍କୁ ) ବୁଝିଲେ ସାର ? ଆପଣ ଆଉ ସାଇକୋଲଜି କ'ଣ ପଢ଼ିଛନ୍ତି···? ଏଇଠିତ ଶେଲି ପାଖରେ ହାରିଗଲେ ।

ସିଦ୍ଧାର୍ଥ ॥ ମାନେ ମୁଁ ହିରୋଇନ୍ ନୁହଁତ ?

ରବିଦାସ ॥ ଛାଡ଼ନ୍ତୁ ଛାଡ଼ନ୍ତୁ··· ଆପଣ ଶେଲିକୁ ଚିହ୍ନି ନଥିଲେ । ଶେଲି ମୋର ପିସ୍ତୁତଭଉଣୀ, ହେଇ ତେର ବର୍ଷ ବୟସରୁ ଫ୍ରକ୍ ପିନ୍ଧି ଯିଏ ଯେତେବେଳେ ନାଟ୍ୟ ଜଗତକୁ ଆସିଥିଲା ସେଇ ଦିନଠୁ ମୁଁ ଅନୁମାନ କରିଛି ଶେଲି ଓଡ଼ିଶାର ଷ୍ଟେଜ୍ ଆଉ ସିନେମା ଜଗତରେ ନାଁ ରଖିବ ।

ଶେଲି ॥ ହଁ, ନା ବୁଝିଛ କେ ? ନାଁ ରଖିବାଟା ଓଡ଼ିଶାରେ ସାଂଘାତିକ କେବଳ । ନିଜ ଦୁଃଖ ଲୁଚାଇବାକୁ ଦୌଡ଼ିବାର ଚୋଟାଏ ଚୋଟାଏ ଛଳନା ।

ନାଟ୍ୟକାର ॥ ଏବଂ ସେଥିପାଇଁ ମୁଁ ସେ ଦିନ ଭଦ୍ରଙ୍କର ଗାଡ଼ି ଯାଉଥିଲି । ମୁଁ ସବୁ ସହିପାରେ .. କିନ୍ତୁ ମୁଁ କାହାର ହାତରେ ଖେଳଣା ହୋଇ ପାରିବିନି···

ସିଦ୍ଧାର୍ଥ ॥ ନାଟ୍ୟକାର ! ତମେ ସେ ଦିନ ରାତିର ସେ କ୍ଲାଇମାକ୍ସଟାକୁ ନାଟକରେ ଲେଖିଦେଇଛ ?

ନାଟ୍ୟକାର ॥ ଆମ୍ଭମାନଙ୍କ, ତମର, ମୋର, ରବିଦାସ ଆଉ ଶେଲିର, ଶେଲି, ମୁଁ. ରବିଦାସ ଓ ତମର, ରବିଦାସ, ଶେଲି ଓ ତମର ମୋର ତମର ଶେଲିର ଓ ମୋର, ରବିଦାସର··· କେବଳ ଆମର ।

ସିଦ୍ଧାର୍ଥ ॥ ପ୍ଲିଜ୍, ଡାଇରେକ୍ଟର ସାହେବ ! ଟିକେ ଦେଖିବା ସେ ସିନ୍‌ଟା

ରବିଦାସ ॥ ଶେଲି ? କ୍ଲାଇମାକ୍ସଟା ବର୍ତ୍ତମାନ ?

ଶୈଳୀ ।। କ୍ଲାଇମାକ୍ସଟା ସବୁ ନାଟକର ଶେଷରେ ରହେ ।

ନାଟ୍ୟକାର ।। ଆମେ କିନ୍ତୁ ଜାଣିପାରୁନା ଜୀବନରେ କ୍ଲାଇମାକ୍ସଟା କେତେବେଳେ ଆସେ, କାରଣ ନାଟକ ଭଳି ଗୋଟାଏ ସୁଚିନ୍ତିତ ଯୋଜନାରୁ ମଣିଷର ଜନ୍ମ ହୁଏନା... ଆମେ ସବୁ ଏଇ ଏକ ଜୈବିକ ପିପାସାର By-product... ନାଟକର ଗୋଟାଏ ଆରମ୍ଭ ଅଛି... ଘଟଣା ଗୁଡ଼ାକ କାହାଣୀ ଭିତରେ ମିଶିଯାଇ କ୍ରମେ କ୍ରମେ ଉପରକୁ ଉଠନ୍ତି । ଶେଷରେ ଆସେ କାହାଣୀର ଗୋଟାଏ କ୍ଲାଇମାକ୍ସ...

ଶୈଳୀ ।। ତୁମେ ପାଗଳ... ହିରୋଇନ୍ ଘର ଭାଙ୍ଗି ପଳେଇଗଲା... ବ୍ୟଭିଚାରିଣୀ ହେଲା...

ସ୍ୱକାର୍ଥ ।। ଭିଲେନ୍ ଆସିଲା... ହିରୋଇନ୍ ଘର ଭାଙ୍ଗି ପଳେଇଯିବା ବେଳେ ତୁମେ ଆସି ହାଜର... ଫାଇଟିଂ...

ଭବଦାସ ।। ଟ୍ରାଜେଡ଼ି... ହିରୋ ଆତ୍ମହତ୍ୟା କରୁଛି... ବିଷ ପାନ... ଭିଲେନ୍‌କୁ ହତ୍ୟା କରୁଛି... ପାହାଡ଼ ଉପରୁ ଡେଇଁ ପଡ଼ୁଛି... ଓଲଟି ଯାଇଛି କାର୍... ନିଆଁ ଲାଗି ଗଲା... ଡିସୁମ୍ ଡିସୁମ୍ ଫାଇଟିଂ...

ନାଟ୍ୟକାର ।। ଜୀବନ କିନ୍ତୁ ଠିକ୍ ଓଲଟା... କ'ଣ ହେବନି... ଏ ସବୁ ଖାଲି ଭାବିବା ଗୋଟାଏ ଗୋଟାଏ ବୌଦ୍ଧିକ ଯନ୍ତ୍ରଣା... ଅଥଚ ଯାହା ଘଟିବାର କଥା ଘଟିଯାଏ... ଘଟିଗଲା ପରେ ଆମେ କେବଳ ଆଶ୍ଚର୍ଯ୍ୟ ହେଉ... ନିହାତ ଗାଲୁଆମୀ ଜଣ ଆମେ ଏଇ ମାନଙ୍କୁ ଭାଗ୍ୟବାଦୀ ବୋଲି ହସରେ ଉଡ଼େଇ ଦେଉ... ଅଥଚ... ଆମେ... ଆମର ଅତୀତ... ଅତୀତର ଅତୀତ... ଯାହା ଆମ ରକ୍ତର ଜୀନ୍ ଭିତରେ, ଆମର ପ୍ରକୃତି ଓ ପ୍ରବୃତ୍ତିକୁ ନିୟନ୍ତ୍ରଣ କରି ଆସିଛି, ତାକୁ ଏଡ଼ାଇ ଯିବାର ଉପାୟ ନାହିଁ... ଆମର ଐତିହ୍ୟ ଓ ପରମ୍ପରା... ବିଶ୍ୱାସ; ସବୁ ଜମାଟ ବାନ୍ଧି କୋଉଠି ତନ୍ତୁ ଭିତରେ ରହି ଯାଇଛି... ଆମର ନିଃଶ୍ୱାସ ପ୍ରଶ୍ୱାସରେ, ଆମ୍ଭର ଆଚରଣରେ କେବଳ ସେଇଆ ହିଁ... ସେଇଆ ହିଁ ପ୍ରତିଫଳିତ ହେଉଛି...

ଋଷିଦାସ ॥ ମୁଁ ଜାଣେ ଜୀବନର କୋଉ ଘଟଣା ସଙ୍ଗତ ତାହାର ସମ୍ପର୍କ ନାହିଁ । ନାଟକ ଭଳି ସଜେଇ ହେଇ ଧାରାବାହିକ ଭାବେ କିଛି ହୁଏନା, କିଛି ଘଟେନା… ଜୀବନର ସବୁ ଘଟଣା/ ଦୁର୍ଘଟଣା, ହସ/କାନ୍ଦ ମିଶାମିଶି, ବୋଝାବୋଝି ହେଇ ଏକ ହେଇଯାଏ ଓ ତାର ନାମ ଜୀବନ, ତେଣୁ ମୋ ନାଟକରେ କ୍ଲାଇମାକ୍ସ ଆଗ ଆସିପାରେ ଓ ଶେଷରେ ନାଟକ ଆରମ୍ଭ ହୋଇପାରେ । ଯାହା କିଛି… ଯେମିତି ଘଟୁଚି ସେମିତି…

ସିଦ୍ଧାର୍ଥ ॥ ତା ହେଲେ କ୍ଲାଇମାକ୍ସଟା ବର୍ତ୍ତମାନ ହେଉଯାଉ ।

ନାଟ୍ୟକାର ॥ ଆଜ୍ଞା ! ଅନ୍ୟ ସବୁ ଆର୍ଟିଷ୍ଟ ଏଇଠି ନାହାନ୍ତି !!

ଋଷିଦାସ ॥ ତମେ ଆରମ୍ଭ କର; ମୁଁ ସମ୍ଭାଳି ନେଉଛି । ( ଯାଉଁ ଯାଉଁ ଧର ) ସ୍ପେସ୍… ଷ୍ଟେଜ୍ ଖାଲି କର । ସମସ୍ତେ ଲୁଚିଯାଅ…

[ ସମସ୍ତେ ଲୁଚିଯାଇଗଲେ ]

ମଞ୍ଚର ଆଲୋକ କମ ହେଉଛି ପଥ, ଦେଖ, ସିନ୍ଟା ଠିକ୍ ଏଇ ଭଳି, ଡାକବଙ୍ଗଳା ଠାରୁ କିଛି ଦୂରରେ… ଗଛ ମୂଳର ଅନ୍ଧ- କାରରେ ଏକା ଏକା ଠିଆହୋଇଛି ନାଟ୍ୟକାର । (ନାଟ୍ୟକାରଙ୍କୁ ଲକ୍ଷ୍ୟ କରି) ନାଟ୍ୟକାର ବାବୁ । ପ୍ଲିଜ୍ [illegible] କଥନ୍ତୁ । ( ନାଟ୍ୟକାର ଆସି ମଞ୍ଚକୁ ପଛ କରି ଗୋଟାଏ ପାଖରେ ଠିଆ ହେଇଛନ୍ତି ) ମନେ କରନ୍ତୁ ସେ ସିଦ୍ଧାର୍ଥ ବାବୁଙ୍କର ଗାଡ଼ିଟାକୁ ଆଉଜି ଠିଆ ହେଇଛନ୍ତି । ଅନ୍ୟ- ପଟେ ଶେଲି ଡାକବଙ୍ଗଳାରୁ ବାହାରି ଚାଲିକା ପଟକୁ ଯାଉଛି… ମନେ କରନ୍ତୁ ଡାକବଙ୍ଗଳାଟା ବାଁ ପଟେ । ( ଶେଲି ଯେମିତି ଯାଉ ଯାଉ ପଛରୁ ପାଦ ଟିପି ଟିପି ଆସିଚ ସିଦ୍ଧାର୍ଥ ଓ ଆଖି ମୁଦି ଧରୁଛି ଶେଲୀର )

ଶେଲୀ ॥ ( ଚିତ୍କାର କରି ) ଓଁ !!

ସିଦ୍ଧାର୍ଥ ॥ ଏସ୍ତୁ ! ଏମିତି ପାଟିକରୁଛ କାହିଁକି ?

ଶେଲୀ ॥ ଆପଣ କୋଉଠି ଏମିତି ଜଗି ବସିଥିଲେ ମତେ ଡରେଇ ଦେଲ ?

ସିଦ୍ଧାର୍ଥ ॥ ଡରେଇଲି କେମିତି କାହିଁକି ? ତମେ ଲୁଚି ଲୁଚି ଅନ୍ଧାରରେ ଅନୁସାର କରିବାକୁ ଯାଉଥିଲ ମୁଁ ସ୍ପଷ୍ଟ ଏମିତି ଫଲୋ କରୁଥିଲି···

ଶେଲୀ ॥ ଖୁବ ବେଶୀ ସିଗାରେଟ୍ ଟାଣୁଛନ୍ତି !

ସିଦ୍ଧାର୍ଥ ॥ ତମେ ପିଅନା ?

ଶେଲୀ ॥ ପିଇନି । ମାତାଲ ହେଇଯିବି ।

ସିଦ୍ଧାର୍ଥ ॥ ଟିକିଏ ଜିନ୍ ନିଅ ।

ଶେଲୀ ॥ ମୋର ସେଇ ବିଅର ଚଳିବ । ଯଥେଷ୍ଟ ପିଇଛି ।

ସିଦ୍ଧାର୍ଥ ॥ ଯାଉଥିଲ କୁଆଡ଼େ ?

ଶେଲୀ ॥ କୋଉଠିକି ଯିବି ? ଏମିତି···

ସିଦ୍ଧାର୍ଥ ॥ ନାଟ୍ୟକାର ପାଖକୁ ?

ଶେଲୀ ॥ ନାଟ୍ୟକାର କୋଉଠି ଅଛନ୍ତି ମୁଁ ଆଦୌ ଦେଖିନି । ମୁଁ ତ ମାଂସ ତରକାରୀ ରାନ୍ଧୁଥିଲି ।

ସିଦ୍ଧାର୍ଥ ॥ ଏମିତି ପାଦ ଚପି ଚପି ଚାଲିବା କ'ଣ ଦରକାର ଥିଲା ? ମୋର ସନ୍ଦେହ ହେଲା ସେଇଥିପାଇଁ follow କଲି ।

ଶେଲୀ ॥ ଏମିତି ଅଭଦ୍ରଙ୍କ ଭଳି ଧରିଲେ କାହିଁକି ?

ସିଦ୍ଧାର୍ଥ ॥ ଓଃ ! ସବୁବେଳେ ମୋ ଉପରେ ଏମିତି ରାଗୁଛ କାହିଁକି ସେ ? ଭାବ ନେଉନା, ତମେ ଗୋଟାଏ ନାଟକରେ ଅଭିନୟ କରୁଛ ଓ ହଠାତ୍ ଆସି ଜାବୁଡ଼ି ଧରୁଛ ।

[ ଶେଲୀ ହସିଦେଇ ଦର୍ଶକଙ୍କୁ ଚାହାନ୍ତି ]

ନାଟ୍ୟକାର ॥ ଜୀବନ କନ୍ତୁ ଠିକ୍ ଓଲଟା··· କ'ଣ ହେବ, କ'ଣ ହେବନି··· ଏସବୁ ଖାଲି ଭାବିବା ଗୋଟାଏ ଗୋଟାଏ ବୌଦ୍ଧିକ

ଶେଲି ॥ ଠିକ୍ ଭାଇ ! ଏ ଘଟଣା ଏଠିକାରେ ଥାଉ ।

ଭବଦାସ ॥ ସେ ଦିନ ଘରେ ତା' ହେଲେ ଏସ୍ତା କରୁଥିଲୁ ?

ଶେଲି ॥ ନାଟ୍ୟକାରଙ୍କ ସାଙ୍ଗରେ ଖେଳିବା ପାଇଁ ଭଲ ଲାଗୁଥିଲା ।

ଭବଦାସ ॥ ସେତିକିବେଳେ 'ଆତ୍ମଲିପି' ଲେଖିବାର ପରିକଳ୍ପନା କରା ଯାଇ ନଥିଲା ।

ନାଟ୍ୟକାର ॥ ମୁଁ କିନ୍ତୁ ଠିକ୍ ଜାଣିଥିଲି ।

ଶେଲି ॥ କ'ଣ ?

ନାଟ୍ୟକାର ॥ ତମେ ମୋ' ସାଙ୍ଗରେ ଖେଳୁଥିଲ ବୋଲି ।

ସିଦ୍ଧାର୍ଥ ॥ ବୋକା ନାଟ୍ୟକାର, ଜହ୍ନାଡ ବୋକା । ଶେଲି ଗୋଟାଏ ଖେଳୁଆଡ଼ ଝିଅ ବୋଲି ତ ତାକୁ ମୁଁ ପିକ୍‌ନିକ୍‌ରେ ନେଇଥିଲି ।

ଶେଲି ॥ ମିଛ, ପିକ୍‌ନିକ୍ ଗୋଟାଏ ବାହାନା ଥିଲା । ମତେ ଭୁଲେଇ ନେଇ ଯାଇଥିଲ ତମେ ।

ଭବଦାସ ॥ ଆମେ ନାଟ୍ୟକାରଠୁ ଗୋଟାଏ ନୂଆ ନାଟକ ଖୋଜୁଥିଲୁ, ଏବଂ ତାର ଗୋଟାଏ ମୁଡ୍ ଉଦ୍ରେକ କରେଇବା ଥିଲା ଆମର କାମ ।

ସିଦ୍ଧାର୍ଥ ॥ ଝିଅଟିଏ ନଥିଲେ ସେ ମୁଡ୍ ଆସିବନି ।

ନାଟ୍ୟକାର ॥ ସେଇଥର କିନ୍ତୁ ପ୍ରଥମେ ମୁଁ ଶେଲିକୁ ଚହ୍ନିଲି ।

ଶେଲି ॥ ବାପ୍‌ରେ ବାପ୍ ! ତା' ପୂର୍ବରୁ ମୁଁ ଶୁଣିଥିଲି ତମେ ଭାରି ଗର୍ବୀ, ଭାରି ଗମ୍ଭୀର... ଝିଅଙ୍କ ଆଗରେ ଆଦୌ ନିଜର ଦୁର୍ବଳତା ଧରା ପକାଅନି...

ସିଦ୍ଧାର୍ଥ ॥ ଭବଦାସ ବୁଝେ ତମେ ଦୁ'ଜଣ କୁଆଡ଼େ ପରସ୍ପର ପ୍ରେମ କଲ... love... ମୁଁ ତ ବାବା ସେଗୁଡ଼ାକ କିଛି ବୁଝେନା... ଚୁପ୍‌ଚାପ୍ ରହିଗଲି...

ଭବଦାସ ॥ ଭାଇଁକି ବୁଝିବ ? ପ୍ରେମରୁ ତମକୁ କ'ଣ ମିଳିବ ଯେ ? ଝିଅଟିଏ ମିଳିଗଲେ ଯନ୍ତ୍ରପାତି ବ୍ୟବହାର କଲାପରି... ହୁଁ :

ନାଟ୍ୟକାର ॥ ଗଣ୍ଡଗୋଳ କରନ୍ତ । ମୋଟ ଉପରେ ଶେଲୀ ସେଇ ଦୁଇ-ଦିନ ଦ୍ରୌପଦୀ ଭୂମିକାରେ ଅଭିନୟ କରୁଥିଲା ।

ଶେଲୀ ॥ ପାଞ୍ଚଜଣ ପାଣ୍ଡବ ନଥିଲେ କିନ୍ତୁ, ତିନିଜଣ !

ସିଦ୍ଧାର୍ଥ ॥ ସେଥିରେ ତ ଏତେ କଥା ଘଟିଗଲା ।

ଶେଲୀ ॥ ତିନି ନାଟ୍ୟକାର ବନ୍ଧୁଙ୍କ ପଶ୍ଚର ।

ସିଦ୍ଧାର୍ଥ ॥ କ'ଣ ନାଟ୍ୟକାର ?

ନାଟ୍ୟକାର ॥ କାହିଁକି ଯେ ମୋ' ମନଟା ଏମିତି ଦୁର୍ବଳ ହୋଇଯାଏ ମୁଁ ଜାଣି ପାରେନା, ନା… ଦୁର୍ବଳ ନୁହେଁ… ଅବଶ୍ୟ ଅନେକ ଦିନରୁ ମୋ' କଲେଜର ଝିଅମାନଙ୍କର ମୋ' ଉପରେ କିଂଭୂତ କିମାକାର ଧାରଣା । ଦଳେ ଭାବନ୍ତି ମୁଁ ଏକ ଲମ୍ପଟ… ମୁଁ କିନ୍ତୁ ପାହାଡ଼ ଭଳି ଗୋଟାଏ ଅହଂ ନେଇ ଘୁରିବୁଲେ… ସେଇ ଅହଂ ଆଗରେ ଝିଅମାନେ ଶ୍ରେଷ୍ଠ ଦିଶନ୍ତି । ତେଣୁ କାହା ଆଗରେ ନିଜ ଦୁର୍ବଳତା ଜଣେଇ ପ୍ରେମ ନିବେଦନ କରିବା ମୋ ପକ୍ଷରେ ଅସମ୍ଭବ… ତଥାପି… ଶେଲୀକୁ ଦେଖି କାହିଁକି ଯେ ଏମିତି ହେଲି… ସତରେ ଶେଲୀ… ! ତୁମେ ଏକ ଚୁମ୍ବକ… ବାରମ୍ବାର, ବାରମ୍ବାର ତମକୁ ଦେଖିଲେ ସୁଦ୍ଧା ତୃପ୍ତି ଆସେନା… ବାରମ୍ବାର… ବାରମ୍ବାର ତମକୁ ଛୁଇଁଲେ ସୁଦ୍ଧା କ୍ଲାନ୍ତି ଆସେନି…

ସିଦ୍ଧାର୍ଥ ॥ ବାଃ ! ଏ ଡାଇଲଗ୍‌ଟା ୱାଣ୍ଡରଫୁଲ୍ । ଏଇଟାକୁ ନାଟକରେ ଲେଖି ଦେଉନା ?

ଶେଲୀ ॥ ଛି ! ମୋ' ସାଙ୍ଗମାନେ ପଢ଼ିଲେ କ'ଣ ଭାବିବେ ଯେ ?

ରବିଦାସ ॥ ଭାବିବେ ଶେଲୀ ନାଟ୍ୟକାର ପରସ୍ପରଙ୍କୁ ଭଲ ପାଉଥିଲେ… ଠିକ୍ ଅଛି ନାଟ୍ୟକାର… ଏଇ ଡାଇଲଗ୍ ନାଟକରେ ରହିବ ।

[ ଠିକ ଏତିକିବେଳେ ବାହାରୁ ଦୁଆର 'ଖଟ୍‌ଖଟ୍ ଶବ୍ଦ ଶୁଭିଲା ।' ଏବଂ ଶୁଭିଲା ସାଂସ୍କୃତିକ ଠିକାଦାରଙ୍କ ସ୍ୱର ! ]

ଠିକାଦାର ॥ କିଏ ଅଛ ? ଭିତରେ କିଏ ଅଛ ?

ସିଦ୍ଧାର୍ଥ ॥ ଠିକାଦାରଟା ପୁଣି ଆସିଲାଣି ।

ନାଟ୍ୟକାର ॥ କାହିଁକି ଆସିଛ ?

ସିଦ୍ଧାର୍ଥ ॥ ପୁଣି ପୁଡ଼ାଏ ବକ୍ ବକ୍ ହବ । ତୁମେ ମାନେ ସବୁ ଯାଅ, ମୁଁ ତା' କଥା ବୁଝୁଚି ।

ରବଦାସ ॥ କାହିଁକି ତା' ପିଛା ପଇସା ଖର୍ଚ୍ଚ କରିବ ? ତମେ ସମସ୍ତେ ଲୁଚିଯାଅ । ମୁଁ ତା' କଥା ବୁଝୁଚି ।

ଠିକାଦାର ॥ ( ବାହାରୁ ) କବାଟ ଖୋଲ । କ'ଣ ଏତେ ଡେରି ହଉଚି ?

ରବଦାସ ॥ ତୁମେ ସବୁ ପଛ ଦରଜା ଦେଇ ଚାଲି ଯାଅ, ମୁଁ ସମ୍ଭାଳୁଚି ।

ସିଦ୍ଧାର୍ଥ ॥ ଚାଲ ନାଟ୍ୟକାର, ମୁଁ ତମକୁ ଗାଡ଼ିରେ ନେଇ ଶେଳୀ ଘରେ ଛାଡ଼ି ଦେଇ ଆସୁଚି ।

ନାଟ୍ୟକାର ॥ ଆପଣ ଶେଳୀକୁ ନେଇ ଯାଆନ୍ତୁ । ମୁଁ କଲେଜ ମ୍ୟାନେଜିଂ ସେକ୍ରେଟାରି ଘର ଦେଇ ଯିବି, ଡକେଇଥିଲେ ।

ସିଦ୍ଧାର୍ଥ ॥ ଏକା ଏକା ଯିବ ? ମତେ କାହିଁକି ଭଲ ଦଶୁନି ।

ନାଟ୍ୟକାର ॥ କାହିଁକି ?

ସିଦ୍ଧାର୍ଥ ॥ ସେମାନେ ସମସ୍ତେ ତମ ପଛରେ ଲାଗିଛନ୍ତି ।

ନାଟ୍ୟକାର ॥ ସେମାନେ କୁକୁର । ପଛରେ ଭୁକିବା ତାଙ୍କର କାମ । କିଏ ସେମାନଙ୍କୁ ଖାତିର କରିଛି ?

ସିଦ୍ଧାର୍ଥ ॥ ଆହା··· ନାଟକଟା ମଞ୍ଚସ୍ଥ ହେଲା ପର୍ଯ୍ୟନ୍ତ ମୋ' ଦେହ ଉପରେ ଖଣ୍ଡା ଝୁଲୁଚି ନାଟ୍ୟକାର । କଳିଙ୍ଗ ପଟ୍ଟନାୟକଙ୍କୁ ତମେ ଯେମିତି ଗାଳି ଦେଇଚ ସିଏ କ'ଣ ତମକୁ ଏତେ ସହଜରେ ଛାଡ଼ିଦେବ ଭାବିଚ ?

ନାଟ୍ୟକାର ॥ ଦେଖାଯାଉ କ'ଣ ହଉଚି । ଆସନ୍ତୁ ।

[ ସମସ୍ତେ ଚାଲିଗଲାପରେ ହର୍ଷେ ଶିକ ସଂସ୍କୃତ ଠିକାଦାରଙ୍କୁ ଭିତରକୁ ଡାକି ଆଣିଲେ । ]

ଠିକାଦାର ॥ ଓ, ତମେ ?

ନିର୍ଦ୍ଦେଶକ ॥ ନମସ୍କାର ।

ଠିକାଦାର ॥ ବସିବାପାଇଁ ଗୋଟାଏ ଚୌକି ଆଣ, ତମ ଅନୁଷ୍ଠାନ କେମିତି ଚାଲିଚ ?

ନିର୍ଦ୍ଦେଶକ ॥ ଗୋଟାଏ ପ୍ରକାର । ପ୍ରଯୋଜକଙ୍କୁ ଡାକି ଦେବି ?

ଠିକାଦାର ॥ ଡାକି ଦବ କ'ଣ ? କୁହ – ଲଟ ନ ହେଲେ କୋକାକୋଲା ଆଣି ପହଞ୍ଚିବେ, କହିବ ମୋ' ବେକ'ପାଇଁ ଗୋଟାଏ କର୍ପୂରମାଳ ଆଣିଥିବେ ଓ ମୁଁ କହିବା ପାଇଁ ଗୋଟାଏ ମାଇକ୍ରୋଫୋନ୍ !!

ନିର୍ଦ୍ଦେଶକ ॥ ବର୍ତ୍ତମାନ କହିବେ ?

ଠିକାଦାର ॥ ବର୍ତ୍ତମାନ କହିପାରେ; ନ ହେଲେ ଦୁଇହଜାର ବର୍ଷ ପରେ କହିପାରେ—ସେଥିରେ କିଛି ଯାଏ ଆସେ ନାହିଁ । ସଂସ୍କୃତି ସମ୍ପର୍କରେ କହିବା ଆମର ପେଶା । (ରୁମାଲ୍‌ରେ ମୁହଁ ପୋଛୁ ) ନାଟକ କେତେଦୂର ଗଲା ?

ନିର୍ଦ୍ଦେଶକ ॥ ବର୍ତ୍ତମାନ କ୍ଲାଇମାକ୍‌ସଟା ରିହାରସାଲ୍ କରୁଥିଲୁ ।

ଠିକାଦାର ॥ କ୍ଲାଇମାକସ ଗୋଟାଏ କ'ଣ ? ନାଟକରୁ କ୍ଲାଇମାକ୍‌ସ ଉଠିଗଲାଣି ।

ନିର୍ଦ୍ଦେଶକ ॥ ତା'ହେଲେ ସେଇଟା ନାଟକ ନ ହୋଇ ଗୋଟାଏ ପ୍ରବନ୍ଧ ହୋଇଯିବ ।

ଠିକାଦାର ॥ ହଉ । ପ୍ରବନ୍ଧ ମଧ୍ୟ ନାଟକ ହୋଇପାରେ ।

ନିର୍ଦ୍ଦେଶକ ॥ କିନ୍ତୁ ନାଟକରୁ କ୍ଲାଇମାକସ ଉଠି ପାରିବ ନାହିଁ । କାହାଣୀ ଭିତରେ କ୍ଲାଇମାକ୍‌ସର ସ୍ଥାନ ପରିବର୍ତ୍ତିତ ହୋଇପାରେ···

ଠିକାଦାର ॥ କାହାଣୀ ? କାହାଣୀ ଗୋଟାଏ କ'ଣ ? ନାଟକ କେବଳ ଗୋଟାଏ କାହାଣୀ ଭିତରେ ସୀମାବଦ୍ଧ ହୋଇ-ପାରେନା, ନାଟକ କ୍ଷେତ୍ରରେ ପୃଥିବୀ ଅନେକ ଆଗେଇ ଗଲାଣି ।

ନିର୍ଦ୍ଦେଶକ ॥ କାହାଣୀଟିଏ କହୁଲେ ଆପଣ କ'ଣ ବୁଝନ୍ତି ? କଥାରୁ ?
ପ୍ରଥମମୁହୂର୍ତ୍ତିରେ ମଣିଷ ମନରେ ସଂଖ୍ୟାହୀନ କାହାଣୀର
ତାସଘର ଗଢ଼ାହୁଏ ଏବଂ ଭାଙ୍ଗେ···ଜୀବନର କୋଟି କୋଟି
କାହାଣୀ । ପୃଥିବୀରୁ ଖାଦ୍ୟ ଶେଷ ହୋଇ୍ ଯାଇପାରେ···
ଉର୍ବରଭୂମି ଊଷର ହୋଇଯାଇପାରେ··· କିନ୍ତୁ ଜୀବନରୁ
କାହାଣୀ ଶେଷ ହୋଇ ପାରିବ ନାହିଁ···

ଠିକାଦାର ॥ (ନିର୍ଦ୍ଦେଶକଙ୍କୁ ଚାହିଁ) ଆଜି ଖାଲି ବଡ଼ ବଡ଼ କଥା କହୁଚ ?
ଭାଷଣ ଦେବାପାଇଁ ଠିକା ମୁଁ ନେଇଚି । ତମେ ନୁହ ।
ଆଚ୍ଛା, ତମ ନାଟକର ପରିଚାଳନା ଥିଓରୀ କ'ଣ ? କୋଉ
ଫିଲସଫି ଉପରେ ତମେ ନିର୍ଦ୍ଦେଶନା ଦଉଛ ?

ନିର୍ଦ୍ଦେଶକ ॥ ନିର୍ଦ୍ଦେଶନାର ଗୋଟାଏ ଦର୍ଶନଶାସ୍ତ୍ର ମଧ୍ୟ ଅଛି ନା କ'ଣ ?

ଠିକାଦାର ॥ ସବୁ ପାଠରେ ଲେଖା ହୋଇଛି । ପଢ଼ । ଓଡ଼ିଆମାନେ
ପଢ଼ିବା ଉଚିତ, ଦେଖିବା ଉଚିତ । ବମ୍ବେ ଯାଇଥିଲି,
ସେଇଠି ନାଟକ ହଉଚି । କଲିକତା ଯାଇଥିଲି ।
ସେଇଠି ମଧ୍ୟ ନାଟକ ହଉଛି । ଦିଲ୍ଲୀ ତ ପ୍ରାସ୍ତ ସଂସ୍କୃତିର
କଞ୍ଚାମାଲ ଆଣିବା ପାଇଁ ଯିବାକୁ ପଡ଼େ । ସେଇଠି ମଧ୍ୟ
ନାଟକ ହଉଛି । ସେମାନେ ଯାହା କରୁଛନ୍ତି ଗୋଟାଏ
ଉପରେ କାମ କରିଯାଉଛନ୍ତି···

ନିର୍ଦ୍ଦେଶକ ॥ ଏଇଟା ଓଡ଼ିଶା । ପରସ୍ପର ଗୋଡ଼ ଟଣାଟଣିର ଦେଶ ।
ମୋ' ନାଟକ ମଞ୍ଚସ୍ଥ ହେଲେ ଅନ୍ୟ ନିର୍ଦ୍ଦେଶକ ଆଉ ଅନ୍ୟ
ନାଟ୍ୟକାରଙ୍କର କଣ୍ଠ ଖୋଲି ଯାଇପାରେ··· ଏଣୁ ଅନେକ
ଚାହାନ୍ତି ଏ ନାଟକ କେମିତି ମଞ୍ଚସ୍ଥ ନ ହେଉ ।

ଠିକାଦାର ॥ କିଛି ଯାଏ ଆସେ ନାହିଁ । ଆଗେଇ ଚାଲ । ତମକୁ
ଅନୁଧାବନ କରିବାକୁ ପଡ଼ିବ । ଅନୁକରଣ ନୁହେଁ ।
ଅନୁସରଣ ନୁହେଁ । ଅନୁଗମନ ନୁହେଁ । ସମସ୍ତଙ୍କ
ଆଗରେ ରେସ୍‌କୋର୍ସର ଘୋଡ଼ାଭଳି ଦୌଡ଼ିବାକୁ ପଡ଼ିବ ।

ନିର୍ଦ୍ଦେଶକ ॥ ଦୌଡ଼ିବା କ'ଣ ଏକ ସାଂସ୍କୃତିକ ଚେତନା ?

ଠିକାଦାର ।। ତମେ ଦୌଡ଼ିବାପାଇଁ ବାଧ୍ୟ । ଧୀରେ ଧୀରେ ଯିବା ସମସ୍ତ ସ୍ତ୍ରୀଲଗନ୍ସ । ନାଟ୍ୟକାର କାହିଁ ?

ନର୍ଦ୍ଦେଶକ ।। ଡାକ ଦେବ ?

ଠିକାଦାର ।। ଗାଁମଚା ପହଲମାନ୍ ଗଲ କୁଆଡ଼େ ? ( ଯୋଉପଟେ ଆସିଥିଲେ ସେଇପଟକୁ ଚାହିଁ ) ଚାମ୍ଚା !!! ଚାମ୍ଚା !!!

ସ୍ତ୍ରମସ୍ତ ।। ଶରବ୍‌ପିଲା ହାକର ଦେଲା ହଜୁର ।

ଠିକାଦାର ।। ସ୍ତ୍ରୀଙ୍କୁ ଚନ୍ହିଚ ?

ସ୍ତ୍ରମସ୍ତ ।। ନର୍ଦ୍ଦେଶକ··· ( ସ୍ତ୍ରି ଛୁଷ୍ଟ ବାହାରକଲା )

ଠିକାଦାର ।। ସ୍ତ୍ରୀଙ୍କର ମନ୍ତ୍ରି ଷ୍ଟ ଅପରେଶନ୍ କରାଯାଉ ।

ସ୍ତ୍ରମସ୍ତ ।। କରାଯାଉ ହଜୁର । ( ନର୍ଦ୍ଦେଶକଙ୍କୁ ) କ'ଣ ? ଚିହ୍ନିଲେ ମତେ ?

ଠିକାଦାର ।। ଦେଖାଅ ତମର ବିଦ୍ୟା !!

ସ୍ତ୍ରମସ୍ତ ।। ମୁଁ ବହୁରୂପୀ !!

ଠିକାଦାର ।। ବୁଝିଲ ନର୍ଦ୍ଦେଶକ ! ତମେ ଅନେକ ଜିନିଷ ଶିଖିବା ଉଚିତ । କ'ଣ ଚାମ୍ଚା ?

ସ୍ତ୍ରମସ୍ତ ।। ଦେଖେଇ ଦେବ ?

ଠିକାଦାର ।। ସମ୍ଭାଳି ଯାଅ । ଅଭିନୟ କ'ଣ ?

ନର୍ଦ୍ଦେଶକ ।। ଅଭିନୟ···ମାନେ··· ମୁଁ ଠିକ୍ ଏ ବିଷୟରେ···

ଠିକାଦାର ।। ଅଭିନୟ ଶୋ:ଟାଏ ଯୋଗ । କ'ଣ ବୁଝିଲ ?

ନର୍ଦ୍ଦେଶକ ।। ଯୋଗ ।

ସ୍ତ୍ରମସ୍ତ ।। ଦେଖେଇଦେବ ଗୋଟିଏ ମୁଦ୍ରା, ମାଲିକ୍ ?

ନର୍ଦ୍ଦେଶକ ।। ମୁଦ୍ରା କ'ଣ ସାର୍ ?

ଠିକାଦାର ।। ବୁଝେଇ ଦିଅ ଚାମ୍ଚା, ମୁଦ୍ରା କ'ଣ ! ଭରତମୁନି ଲେଖି ଥିଲ ।

ସ୍ତ୍ରମସ୍ତ ।। ବୁଝେଇବ ଆଉ କ'ଣ ମାଲିକ୍ ?

ଠିକାଦାର ।। ତାସ୍ ଦେଖିଛ ? ଆକାଶର ତାସ୍ ?

ନର୍ଦ୍ଦେଶକ ।। ଆମେ ନାଟକର ସେଟିଂରେ ତାସ୍, ଜହ୍ନ ସବୁ ଦେଖେଇଲୁଣି ।

ଠିକାଦାର ।। ଦେଖେଇଥିବ ! ମୁଁ କହୁଥିଲି ଅଭିନୟ କରି ତାସ ଭଳି ଦପ୍ ଦପ୍ ହୁଅ...

ନର୍ଦ୍ଦେଶକ ।। ମାଫ୍ କରିବେ; ମୁଁ ତାସ୍ ନୁହେଁ; ମଣିଷ...

ଠିକାଦାର ।। ଚାମ୍‌ଚା !!

ଗୁମସ୍ତ ।। ମାଲିକ ?

ଠିକାଦାର ।। ଏଇ ନର୍ଦ୍ଦେଶକର ଷମ୍ତା ଶକ୍ତି ନାହିଁ ।

ଗୁମସ୍ତ ।। ସେ ବୁଢ଼ା ଦର୍କାର କ'ଣ ? ବଜାରରେ, ଚା' ଦୋକାନରେ ନଜର ଫୁଟାଣି ଦେଖେଇ ନଜେ କାହ୍ନୁ ବୁଲିଲେ ଯଥେଷ୍ଟ ! ପଢିବା କ'ଣ ଦରକାର ?

ନର୍ଦ୍ଦେଶକ ।। ଆମେ କ'ଣ ପଢ଼ୁନୁ ? ଖାସ୍ ଚାମ୍‌ଚା ତମେ ହେଇଛ ଯେ...

ଗୁମସ୍ତ ।। ପଢିବାର କୌଣସି ପ୍ରୟୋଜନ ନାହିଁ । ଧାଡ଼ିଏ ପଢି ବହି ଗୋଟାକଯାକ ପଢ଼ି ଦେଇଚ ବୋଲି କହିବା ଏମାନଙ୍କର ଧନ୍ଦା... କାରଣ ସେତକ ନ କହିଲେ କେହି ତମକୁ ସାହିତ୍ୟ, ନାଟକ କିମ୍ବା ବୌଦ୍ଧିକ ଜଗତରେ ସ୍ଥାନ ଦେବେନି ।

ଠିକାଦାର ।। ତା'ହେଲେ ଏମାନଙ୍କୁ ଶାସ୍ତି ଦରକାର । କି ଶାସ୍ତି ଦିଆଯିବ ।

ଗୁମସ୍ତ ।। ( ସ୍ପ୍ରିଙ୍ଗ୍ ଛୁରୀ ବାହାର କରି ) କାଟି ଉଡ଼େଇ ଦେବି ମାଲିକ୍ ?

ଠିକାଦାର ।। କ'ଣଟା କାଟି ଉଡ଼େଇଦବୁ ?

ଗୁମସ୍ତ ।। ମାଲିକ୍, ଜିଭଟା... !!

ଠିକାଦାର ।। ତା' ଆଗରୁ ନର୍ଦ୍ଦେଶକଙ୍କୁ ତାସଭଳି ଦପ୍ ଦପ୍ ହେବା ଆକ୍‌ଟିଙ୍ଗ୍ ବତେଇ ଦିଅ...

( ଚାମ୍‌ରା 'ଦପ୍‌ଦପ୍‌' ଆକ୍‌ଟିଂ କରିବ )

ଠିକାଦାର ।। ଆଚ୍ଛା, ଡେଉ ଦେଖିଚ ?

ନର୍ଦ୍ଦେଶକ ।। ଦେଖିଚ ସାର୍ ।

ଠିକାଦାର ।। କର । ଢେଉ ଭୂମିକାରେ ଅଭିନୟ କର ।

ସୁମନ୍ତ ।। ପବନ ଭୂମିକାରେ ଅଭିନୟ କର ।

ଠିକାଦାର ।। ଶୁଖିଲା ପତ୍ର ଉଡ଼ିଯାଉଛି··· ଅଭିନୟ କରି ଦେଖାଇ ଦିଅ···

( ଚାମ୍‌ରା ପତ୍ରଭଳି ଗଡ଼ି ଗଡ଼ି ବୁଲିଗଲା )

ନର୍ଦ୍ଦେଶକ ।। ଏଗୁଡ଼ା କ'ଣ ସାଂପ୍ରତିକ ସାଂସ୍କୃତିକ ଆଭିମୁଖ୍ୟ ଆଜ୍ଞା ?

ଠିକାଦାର ।। ମୂର୍ଖ ! ସାଂପ୍ରତିକ ସାଂସ୍କୃତିକ ଆଭିମୁଖ୍ୟ ବୋଲି କିଛି ନାହିଁ··· your attitude··· ମାନେ just ତମର ଚନ୍ଦ୍ରାଧାରିଟା କୋଉ ଆଡ଼କୁ ଯାଉଚି, ସେଇ ଗୋଟାକ ଦେଖିବା କଥା··· ମାନେ, ତମେ ଯଦି ଆମ ମାନଙ୍କୁ ସମାଲୋଚନା କରି ନାଟକ ଲେଖିବ ତା' ହେଲେ ତ ତାକୁ ଗ୍ରହଣ କରିବା ମୋ' ପକ୍ଷରେ ଅସମ୍ଭବ ହେଇ ପଡ଼ିବ । ତା' ବୋଲି ନାଟକଟାକୁ ପ୍ରଚାରଧର୍ମୀ କରିବା ମଧ୍ୟ ଆମେ ଚାହୁଁନୁ' just ଗୋଟାଏ···

ଚାମଚା ।। ସଂସ୍କୃତି-ସଂସ୍କୃତି ବାସ୍ନା ହେବା ଆବଶ୍ୟକ··· (ପବନଟାକୁ ଶୁଙ୍ଘିବା ଅଭିନୟ, ଚାମ୍‌ଚା ତାର ସ୍ପ୍ରିଂ-ଲଗା ଜୁରିଟାକୁ ଖୋଲି ଶୁଙ୍ଘିଲା ଓ କିଛି ବୁଝିପାରିଲା ନାହିଁ ।)

ଠିକାଦାର ।। ବିପ୍ଳବଟା ଖାଲି ଅଭିନୟରେ ଆଣିଲେ ଚଳିବନାହିଁ··· ନାଟକର ବିପ୍ଳବ ବହୁମୁଖୀ ! ପୋଷାକ ପରିଚ୍ଛଦରେ··· ମେକ୍ ଅପ୍‌ରେ ମଧ୍ୟ ବିପ୍ଳବ ଆସିବ···

ନର୍ଦ୍ଦେଶକ ।। ଆସିବା ଉଚିତ । ଆମେ ଗୋଟିଏ ପ୍ରକାର ମେକ୍ ଅପ୍ କରିକୁ ଯୋଉଟା ଲଗେଇଲେ ସମସ୍ତେ ଉଲଗ୍ନ ହେଲା ଭଳି ଦିଶିବେ···

ଚାମଚା ।। ନାରୀମାନେ ପୁରୁଷମାନଙ୍କୁ ଓ ପୁରୁଷମାନେ ନାରୀମାନଙ୍କୁ···

ଠିକାଦାର ।। ମେକ୍ ଅପ୍ କଣ ?

ନିର୍ଦ୍ଦେଶକ ॥ ଭଲ ଦିଶିବା ପାଇଁ ଗୋଟାଏ ପ୍ରକାର··· ମାନେ···

ଠିକାଦାର ॥ ତମେ ଏ ବିଷୟରେ ଚିନ୍ତା କରନା । ଠିକ୍ ଯେମିତି ବଲ୍‌କଲ··· ଠିକ୍ ଯେମିତି ସୂର୍ଯ୍ୟରେ ନିଆଁ··· ଦେହରେ ଚମଡ଼ା···

ଗୁମସ୍ତ ॥ ଗଞ୍ଜେଇରେ ଧୂଆଁ ମେକ୍ ଅପ୍··· କୋଠାରେ ପାଲିସ୍··· କବିତାରେ ଶୈଳୀ ।

ଠିକାଦାର ॥ କବିତା ନୁହେଁ··· କବିତା ନାଟକର ଶତ୍ରୁ··· କାରଣ କବି ମାନେ ନାଟ୍ୟକାରଙ୍କୁ ଈର୍ଷା କରନ୍ତି··· ଅଥଚ ନାଟକ ଦେଖିବା ପାଇଁ ହଜାର ହଜାର ମଣିଷ···

ନିର୍ଦ୍ଦେଶକ ॥ ଫର୍ମ ଠାରୁ କଣ୍ଟେଣ୍ଟ୍‌କୁ ଅଲଗା କରିବାକୁ ପଡ଼ିବ ।

ଠିକାଦାର ॥ ତମର ମେକ୍ ଅପ୍ ବଦଳେଇ ଦେବା ଆବଶ୍ୟକ ।

ଚାମଚା ॥ ଏଇଥର ଗୋଟାଏ ଜୋକର' ଭଳି ମେକ୍ ଅପ୍ ଲଗାଅ···

ଠିକାଦାର ॥ (ଟୋପିଟିଏ ଆଣି ନିର୍ଦ୍ଦେଶକଙ୍କୁ ପିନ୍ଧାଇ) ତୁମେ ଏକ ସର୍କସ୍ ଜୋକର୍ ! ମନେରଖ, ଆକ୍ଟିଂହେଉଛି ନାଟକର ମସଲା,

ଚାମଚା ॥ (ମୁହଁରେ ନାଲି ରଙ୍ଗ ବୋଳି) ମୁଁ ମଧ୍ୟ ଗୋଟାଏ ଜୋକର୍ ହେବି··· ମୁଁ ଗୋଟାଏ ଜୋକର୍ ହେବି ଆଜ୍ଞା; ମତେ ଗୋଟାଏ ଜୋକର୍ କରିଦିଅନ୍ତୁ··· ( ପିଲାଙ୍କଭଳି ଅଳି କଲା ସାଂସ୍କୃତିକ ଠିକାଦାରଙ୍କ ପାଖରେ )

ଠିକାଦାର ॥ ତଥାସ୍ତୁ । ତୁ ମଧ୍ୟ ଆଜିଠାରୁ ଏକ ବିଦୂଷକ ରୂପେ ଗୃହୀତ ହେଲୁ ।

ଚାମଚା ॥ ଓଡ଼ିଆ ସଂସ୍କୃତିର ଜୟ ହେଉ !! ଜୟ ଜଗନ୍ନାଥଙ୍କର ଜୟ ହେଉ··· ତାଙ୍କ ନାଁରେ Black mailing ଏମିତି ଚିରଦିନ ଚାଲିଥାଉ··· ଜୟ ଗଜପତିଙ୍କର ସଂସ୍କୃତି··· ଜୟ ସାଂପ୍ରତିକ ସଂସ୍କୃତି··· !!

[ ପରେ ପରେ ନିର୍ଦ୍ଦେଶକ ଜୋକରଙ୍କ ଭଳି ନାଚିବାକୁ ଆରମ୍ଭ କଲେ ଏବଂ ନିଜର ଟିଣ ଢୋଲ ନିଜେ ପିଟିଲେ । ଏହା ତାଙ୍କର ସାଂସ୍କୃତିକ ରୂପାନ୍ତର । ]

|| ୭।

ନିର୍ଦ୍ଦେଶକ || ମୁଁ ପୃଥିବୀର ସର୍ବଶ୍ରେଷ୍ଠ ନିର୍ଦ୍ଦେଶକ··· Ladies and Gentlemen··· ମତେ ଚିହ୍ନନ୍ତୁ··· ସାଂସ୍କୃତିକ କ୍ଲବରେ ମୋର ମସ୍ତିଷ୍କ ଅପରେସନ ହେଲାପରେ ମୁଁ କେବଳ ଜଣେ ନାଟ୍ୟକାରଙ୍କ ବଦଳରେ ନିର୍ଦ୍ଦେଶନା ଦେଉଛି। ଆପଣମାନଙ୍କୁ ମାନିବାକୁ ପଡ଼ିବ ମୁଁ ଏ ପୃଥିବୀର ସର୍ବଶ୍ରେଷ୍ଠ ନିର୍ଦ୍ଦେଶକ··· ମୋ' ନାଟକରେ କେହି ଦର୍ଶକ ରହନ୍ତୁ ନାହାନ୍ତି··· ଆଜିଠାରୁ ମୁଁ ଦର୍ଶକ ମାନଙ୍କୁ ଗୁଳି କରି ମାରିବି··· ସେମାନଙ୍କର ମସ୍ତିଷ୍କ ଅପରେଶନ୍ କରିବି... ସେମାନେ ମୋ ମୌଳିକ ନାଟକ ବୁଝିବା ପାଇଁ ବାଧ୍ୟ।

ପ୍ରଯୋଜକ || (ହଠାତ୍ ପ୍ରଯୋଜକ ସିଦ୍ଧାର୍ଥ ବର୍ମା ବାହାରୁ ଦୌଡ଼ି ଆସିଲେ) ମାଫ୍ କରିବେ ଲେଡିଜ୍ ଆଣ୍ଡ୍ ଜେଣ୍ଟଲ୍‌ମେନ୍··· ଆମ ନିର୍ଦ୍ଦେଶକଙ୍କର ମସ୍ତିଷ୍କ ଅପରେସନ୍ ପରେ ସେ ଜୋକର୍ ହୋଇଯାଇଛନ୍ତି...

ନିର୍ଦ୍ଦେଶକ || ମୁଁ ଏ ପୃଥିବୀର ସର୍ବଶ୍ରେଷ୍ଠ ନିର୍ଦ୍ଦେଶକ।

ପ୍ରଯୋଜକ || ପ୍ଲିଜ୍ ! ରହିବାକୁ... ଆପଣ ଚାଲନ୍ତୁ... ସେତେବେଳେ ନାଟ୍ୟକାରଙ୍କ ଅବସ୍ଥା ସଙ୍କଟାପନ୍ନ ..

ନିର୍ଦ୍ଦେଶକ || କ'ଣ ହୋଇଛି ନାଟ୍ୟକାରର ? (ସେମିତି ନାଚୁଥାଆନ୍ତି)

ପ୍ରଯୋଜକ || 'ଆତ୍ମଲିପି' ନାଟକ ଲେଖି ତାର ଚାକିରି ଦିବା ଉପରେ। ନିର୍ଲିପ୍ତ ପଞ୍ଚନାମକ ବୋଲି ଗୋଟିଏ ଡେପୁଟି ସେକ୍ରେଟାରୀ ତା ନାଁରେ ଇଣ୍ଟେଲିଜେନ୍ସ ରିପୋର୍ଟ କରିଛି। ରବି ମିଶ୍ର ବୋଲି ଆଉ ଗୋଟିଏ ଅଧ୍ୟାପକ ଇଣ୍ଟେଲିଜେନ୍ସ ବାଲାଙ୍କୁ ମଦ ପିଆଇ ଭୁଲ ରିପୋର୍ଟ ପଠେଇଛି ଯେ ନାଟ୍ୟକାର ଗୋଟାଏ ନକ୍ସାଲାଇଟ୍... ତା' ସାଙ୍ଗରେ ଗୋଟେ ନଣ୍ଡାମୁଣ୍ଡିଆ କମରସିଆଲ ଟ୍ୟାକ୍ସ ଅଫିସର ମଧ୍ୟ ଅଛି··· ଗୋପାଳ ଦାସ କହୁଛି ତା'ର ବେକ କାଟି ଦବ।

ନିର୍ଦ୍ଦେଶକ || କିନ୍ତୁ କାହିଁକି ? ହଠାତ୍ ଏତେ ଗୁଡ଼ାଏ ଭିଲେନ ଆସିଲେ କୁଆଡୁ !

ପ୍ରଯୋଜକ || କାରଣ ନାଟ୍ୟକାର ସିଧା ସଳଖ କଥା କହେ।

ଦର୍ଶକ ।। କଥାଗୁଡ଼ାକ ସିଧା ସଳଖ ବୁଝାଯିବା ଉଚିତ ନୁହେଁ । ଏଇଟା ସାମ୍ପ୍ରତିକ ସାଂସ୍କୃତିକ ଚେତନା... ନିଜର ଇନ୍ଦ୍ରିୟ ଗିଳିଲା ବେଳକୁ କିନ୍ତୁ ସିଧାସଳଖ ପିଟିକି... Ladies and Gentlemen! ମୁଁ ସାମ୍ପ୍ରତିକ ସାଂସ୍କୃତିକ ଚେତନାରେ ଉଦ୍‌ବୁଦ୍ଧ... ମୁଁ ଉଦ୍‌ବୁଦ୍ଧ ହୋଇ ଯାଇଛି ପ୍ରଯୋଜକ ସାହେବ... ମୁଁ ବର୍ତ୍ତମାନ ନାଟ୍ୟକାରର କପୋଳ କଥା ଶୁଣି ପାରୁନି । ମୋ' ସ୍ମୃତିପଟେ ଶୁଭୁଛି ମୋ' ନିଜର ସଂଳାପ... ଆହା... ମୋ' କଥା ଗୁଡ଼ା କି ସୁନ୍ଦର... ମୋ' ପୋଷାକ ମତେ କି ସୁନ୍ଦର ମାନୁଛି... ମୁଁ କେବଳ ମତେ ଦେଖି ପାରୁଛି... ମୋ' ଛଡ଼ା ଅନ୍ୟ କାହାରିକୁ ନୁହେଁ... ମୋର ଜୟ ହେଉ... ମୋର ଜୟ ହେଉ !!

ପ୍ରଯୋଜକ ।। ରବି ଦାସ୍ ! ରବି ଦାସ୍ ତମେ ପାଗଳ ହୋଇ ଯାଉଛ ! ତମକୁ ହିଷ୍ଟ୍ରିଆ ହୋଇ ଗଲାଣି ।

ଦର୍ଶକ ।। ନାଟ୍ୟକାରଙ୍କ କହୁଥିବା ତାର ପଦ ବଡ଼ ହେବାପାଇଁ ଇଚ୍ଛା ଅଛି... ସେ ନିଜ କଥା ନିଜେ ପ୍ରଚାର କରୁ । ମୁହଁରେ ପାଲିସ୍ କରି କଥା କହୁ ପଛରେ ନାଲିସ କରୁ ।

ପ୍ରଯୋଜକ ।। ମୁଁ ମାନୁଛି, ତମେ ହିଷ୍ଟ୍ରିଆ ରୋଗୀ ହେଲେ ମଧ୍ୟ ଟାଲେଣ୍ଟେଡ୍... ସବୁବେଳେ ତମକୁ ନାଟକ ମଞ୍ଚଉଛୁ... ତେଣୁ ତମେ କହୁ ହୋମିଓପାଥିକ୍ ଚିକିତ୍ସା କରାଅ... କାରଣ ତମ ମୁଣ୍ଡ ଭିତରେ ଅସାଧାରଣ ଶକ୍ତି ଅଛି । କିନ୍ତୁ ସେ ଗୁଡ଼ାକ ସାମ୍ପ୍ରତିକ ସାଂସ୍କୃତିକ ଜୀବାଣୁ ପକ୍ଷି ଦୂଷିତ ହୋଇ ଯାଇଛି । ତମେ ଗୋଟାଏ ଜୋକର୍ ହୋଇ ଯାଇଚ... ପ୍ଲିଜ୍... ତମେ ଗୋଟାଏ ଦର୍ଶକ ହୁଅ... ଜୋକର ହୋଇ ମାଙ୍କଡ଼ଙ୍କ ଭଳି ଡ଼ିଆଁ ଡ଼େଇଁ କର ନାହିଁ ।

ଦର୍ଶକ ।। ସିଦ୍ଧାର୍ଥ ବର୍ମା ! ମୁଁ ଜୋକର୍ ହେବ । ଅଲ୍‌ବତ୍ ଜୋକର ହେବ । କାରଣ ମୁଁ ଉଦ୍‌ବୁଦ୍ଧ ।

( ଏପରି ଉଦ୍‌ବୁଦ୍ଧ ଅବସ୍ଥାରେ ମଞ୍ଚ ଉପରେ ଡ଼ିଆଁ ଡ଼େଇଁ କଲାବେଳେ ସିଦ୍ଧାର୍ଥ ବର୍ମା ତାଙ୍କୁ ଏକ ଶକ୍ତ ଚାପୁଡ଼ା ମାରିଲେ । ରବିଦାସ

ତଳେ, ପଡ଼ିଗଲେ । ହଠାତ୍ ଆତ୍ମପ୍ରତ୍ୟୟର
ନଶା ଛୁଡ଼ି ଗଲାପରେ ନମସ୍ତଃ ଯେ ସଂବିତ୍
ଫେରି ପାଇଲେ··· )

ପ୍ରଯୋଜକ ॥ ନିର୍ଦ୍ଦେଶକ !

ନିର୍ଦ୍ଦେଶକ ॥ କ'ଣ ?

ପ୍ରଯୋଜକ ॥ ସାଂସ୍କୃତିକ ଭୂତ ଛୁଡ଼ିଲା ?

ନିର୍ଦ୍ଦେଶକ ॥ ମୋର କ'ଣ ହୋଇଥିଲା ?

ପ୍ରଯୋଜକ ॥ କାଳସୀ ! କାଳସୀ ଲାଗି ଯାଇଥିଲା··· !!

ନିର୍ଦ୍ଦେଶକ ॥ ଠିକ୍ କାଳସୀ ଲାଗିଯାଇଥିଲା ।

ପ୍ରଯୋଜକ ॥ କାଳସୀ ଲାଗିଲେ କେବଳ ଡ଼ିଆଁ ଡେ଼ଇଁ ହୁଏ, କାମ ହୁଏନା । ଏ ଦେଶରେ ସମସ୍ତଙ୍କୁ କେବଳ କାଳସୀ ଲାଗିଛି । ସେଥିପାଇଁ ସଂସ୍କୃତିର ଗର୍ଭ ଭିତରେ ଅନେକ ଜାରଜ ସନ୍ତାନଙ୍କର ଭ୍ରୂଣ ବଢି ଚାଲିଛନ୍ତି··· ତମେ ଆସ, ପ୍ରଯୋଜକ ମୁଁ··· ନାଟ୍ୟକାର, ନିର୍ଦ୍ଦେଶକ ଓ ଦର୍ଶକ ମାନଙ୍କ ଭିତରେ ସମନ୍ବୟ ଆଣିବା ମୋର ଦାୟିତ୍ୱ !

ନିର୍ଦ୍ଦେଶକ ॥ ଯିବା କୁଆଡ଼େ ? ମତେ ବର୍ତ୍ତମାନ ଅନ୍ଧାର ଦିଶୁଛି ।

ପ୍ରଯୋଜକ ॥ ଆସ ମୁଁ ତମକୁ ଗାଡ଼ିରେ ନେଇ ଘରେ ଛାଡ଼ି ଦେଇ ଆସିବି । ତାପରେ ପୁଣି ମତେ ଯିବାକୁ ପଡ଼ିବ ସାଂସ୍କୃତିକ ଠିକାଦାର ପାଖକୁ, ତାର ସାହାଯ୍ୟ ନ ହେଲେ 'ଆତ୍ମଲିପି' ନାଟକ ମଞ୍ଚସ୍ଥ ହୋଇ ପାରିବ ନାହିଁ । ପଲ୍‌ଟିକାଲ୍ ପ୍ରେସର ଦେଉଛନ୍ତି ମାଧବ ଦାସ, ଏମ୍. ପି... ଏଇ ନାଟକ ହୋଇଗଲେ କୁଆଡ଼େ ତାଙ୍କ ସ୍ୱାମୀ-ଜାମାତାଙ୍କର ସାମାଜିକ ପ୍ରତିଷ୍ଠା ନଷ୍ଟ ହୋଇଯିବ !!

ନିର୍ଦ୍ଦେଶକ ॥ ମୁଁ ବଡ଼ କ୍ଳାନ୍ତ ସିଦ୍ଧାର୍ଥ ବାବୁ !! ନାଟକ ପରିଚାଳନା କରିବା ମୋର କାମ··· ଏତେ ରାଜନୀତି ଭିତରେ ପଶିବା ମୋ' ପକ୍ଷେ ସମ୍ଭବପର ନୁହେଁ··· ଯଦି ସମ୍ଭବ ନାଟ୍ୟକାରଙ୍କୁ ଲୁହ ନିର୍ଲିପ୍ତ ପଟ୍ଟନାୟକ ସାଙ୍ଗରେ ସେ ଚିନ୍ତା ସେ ଉଡ଼େଇ ଦେଉ ।... We shall manage !!

ପ୍ରଯୋଜକ ॥ ନାଟ୍ୟକାର କହୁଛନ୍ତି, ଏଇଟା Prestige issue !! ସେ ଛାଡ଼ି ପାରିବ ନାହିଁ ।

[ ହଠାତ୍ ଟେଲିଫୋନ ବାଜି ଉଠିଲା… ନିର୍ଦ୍ଦେଶକ ଯାଇ ଧରିଲେ… ]

ନିର୍ଦ୍ଦେଶକ ॥ ସେ ବର୍ତ୍ତମାନ କେଉଁଠି… ? ହ୍ୟାଲୋ ! ( ଚିତ୍କାର କରି ) What ? ନାଟ୍ୟକାରଙ୍କୁ ମାଡ଼ ହୋଇଛି… ? କିଏ ଓ ! ହସପିଟାଲ… କେତେ ନମ୍ବର Bed… What? Bed No. 42 ? Okay ? ଆପଣ କିଏ ? ହ୍ୟାଲୋ… ହ୍ୟାଲୋ… ( ଫୋନ୍ କଟିଗଲା ଆରପଟୁ )

ପ୍ରଯୋଜକ ॥ କିଏ ମାରିଚି ନାଟ୍ୟକାରଙ୍କୁ ?

ନିର୍ଦ୍ଦେଶକ ॥ ଲୋକଟା ନିଜ ପରିଚୟ ମଧ୍ୟ ଦେଲାନି… ମୋର ଯାହା ଧାରଣା… ସେଇ ନିର୍ଲିପ୍ତ ପଟ୍ଟନାୟକ ଓ ମାଧବ ଦାସଙ୍କ ଖେଳ ଏଇଟା !! ( ମନକୁ ମନ ) ଇଡ଼ିଅଟ୍ସ୍… !!

ପ୍ରଯୋଜକ ॥ ଚାଲନ୍ତୁ… ଆମେ ପୋଲିସ୍‌ରେ ଖବର ଦେଇ ହସ୍‌ପିଟାଲ୍‌କୁ ଚାଲିଯିବା…

( ଦୁହେଁ ଚାଲିଗଲେ, ମଞ୍ଚର ଆଲୋକ ମ୍ଳାନ ହେଲା । କିନ୍ତୁ ଆବହ ସଙ୍ଗୀତ ସେମିତି ଗାମ୍ଭୀର୍ଯ୍ୟ ଓ ଉତ୍କଣ୍ଠାକୁ ବହନ କରି ତୀବ୍ରତର ହେବାରେ ଲାଗିଲା ଏବଂ ମଞ୍ଚ ଉପରେ ଆଲୋକ ସମ୍ପାତ ଦ୍ୱାରା/ଶବ୍ଦ ଦ୍ୱାରା ବିସ୍ଫୋରଣ, ଭୂମିକମ୍ପ ଓ ଝଡ଼ର ସୂଚନା… ଇତିମଧ୍ୟରେ ଗୁମ୍ଫ୍ ପଦ୍ଧଲମାନ ଖସି ଘରଟିକୁ ସଜେଇ ପୁଣି ଶୈଳାର ଘରରେ ପରିଣତ କରିବାକୁ ଲାଗିଲା… ମଞ୍ଚ ସଜ୍ଜା ଶେଷ ହେଲା ମାତ୍ରେ ସଙ୍ଗୀତ ଓ ଆଲୋକରେ ଏକ ଝଡ଼ର ସନ୍ଧ୍ୟା ସୂଚେଇ ଦିଆଗଲା ଓ ବାହାରୁ କବାଟ ଖଟ୍ ଖଟ୍ ଶବ୍ଦ ଶୁଭିଲା… )

ଗ୍ନମଗ୍ନ ॥ କଏ ?... କଏ ଆପଣ...

ବାହାରୁ ॥ ଦୁଆର ଖୋଲ !

ଗ୍ନମଗ୍ନ ॥ ଦୁଆର ଖୋଲିଚ ଓ ଆସିଛନ୍ତି ନିର୍ଲିପ୍ତ ପଟ୍ଟନାୟକ ଏବଂ ମାଧବ ଦାସ । )

ନିର୍ଲିପ୍ତ ॥ ଶେଲି ?

ଗ୍ନମଗ୍ନ ॥ ବଡ଼ ଡାକ୍ତରଖାନାକୁ ଯାଇଛନ୍ତି !

ନିର୍ଲିପ୍ତ ॥ କାହିଁକି ?

ଗ୍ନମଗ୍ନ ॥ ମାଡ଼ପିଟ୍ ହୋଇଛି । ନାଟ୍ୟକାରର ମୁଣ୍ଡ ଫାଟି ଯାଇଛି ।

ନିର୍ଲିପ୍ତ ॥ ଓ ! କେତେବେଳେ ଫେରିବେ ?

ଗ୍ନମଗ୍ନ ॥ କହି ହେବନି, ଆପଣମାନେ ବସନ୍ତୁ, ( ଚାଲିଗଲା··· ) ମୁଁ ଖବର ପଠେଇ ଦେଉଚି··· ସେ ପାଞ୍ଚମିନଟ୍ ଭିତରେ ଆସିଯିବେ ।

ନିର୍ଲିପ୍ତ ॥ ଆପଣ ବସନ୍ତୁ ମଉସା ।

ମାଧବ ॥ ( ବସିବା ପୂର୍ବରୁ ଶଙ୍କ କରି ଛିଙ୍କିଲେ ) ଏ ଘର ଭିତରଟା କେମିତି ଗୋଟାଏ ଡ୍ୟାମ୍··· ମାନେ···

ନିର୍ଲିପ୍ତ ॥ ଆମକୁ କିଛି ସମୟ ଅପେକ୍ଷା କରିବାକୁ ପଡ଼ିବ ।

ମାଧବ ॥ ତମେ ଯାହା କୁହ ଖୋକା, ମୁଁ ଏଇଠି ଏମିତି···ତମେ ତାକୁ ଖବର ଦେଇଥିଲ ?

ନିର୍ଲିପ୍ତ ॥ ମୋ’ ଲୋକ ଆସି ଠିକ୍ ସମୟରେ କହିଦେଇ ଯାଇଥିବେ ।

ମାଧବ ॥ ମୁଁ କିଏ ଜାଣେ ତ ସେ ଝିଅଟା ?

ନିର୍ଲିପ୍ତ ॥ ଜାଣେ, କିନ୍ତୁ କହି ହେବନି, ଖୁବ Obstinate ଝିଅଟା··· ରାଜନୀତି କହିଲେ ତାର ଭୀଷଣ ଘୃଣା ।

ମାଧବ ॥ ( ପୁଣିଥରେ ଛିଙ୍କିଲେ ) ହୁଁ, ଏମିତି ବୁଢ଼ାଏ ବଜାଖି ଚାଲୁ ଝିଅଙ୍କୁ ମୁଁ ଜାଣେ··· ଦିଲ୍ଲୀରେ ଏଇଥିରୁ ମେଞ୍ଚାମେଞ୍ଚା ରାସ୍ତାରେ ବୁଲନ୍ତି··· ଆମ ନର୍ଥ ଏଭେନ୍ୟୁ ଫ୍ଲାଟ୍ କ୍ୱାର୍ଟରକୁ ଅନେକ ଏମିତି ଚଳଣି ହେଇ···

ନିର୍ଲିପ୍ତ ।। ହେଇ ପାରେ । କିନ୍ତୁ ଶେଳୀ ସେମିତିକା ଝିଅ ନୁହେଁ ।

ମାଧବ ।। ( ତୀକ୍ଷ୍ଣଭାବରେ ଚାହିଁଲେ ) ଶେଳୀକୁ ବଜାରୁ ଝିଅ କହିବାରୁ ତମକୁ ବାଧିଲା ବୋଧହୁଏ ?

ନିର୍ଲିପ୍ତ ।। ନା, ମାନେ···

ମାଧବ ।। ଶେଳୀ ବିଷୟରେ ତମେ ମତେ ଯୋଉସବୁ କାହାଣୀ କହିଚ ସେ ସବୁ ସତ ତ ?

ନିର୍ଲିପ୍ତ ।। ସବୁ ସତ ।

ମାଧବ ।। ମୋର ଧାରଣା ଶେଳୀ ସହିତ ଆଠବର୍ଷ ତଳେ କେବଳ ତମର ସମ୍ପର୍କ ନଥିଲା । ବର୍ତ୍ତମାନ ବି ଅଛି, ତମେ ତାକୁ ଏ ପର୍ଯ୍ୟନ୍ତ ଭଲ ପାଅ ।

ନିର୍ଲିପ୍ତ ।। କ'ଣ ଯେ ଆପଣ ଏ ସବୁ କହୁଛନ୍ତି ମଉସା···! ମୋର କହିବା କଥା, ସେ ଜଣେ ବଜାରୁ ଝିଅ ନୁହେ, ତାର ଅର୍ଥ କ'ଣ ମୁଁ ତାକୁ ଭଲ ପାଉଛି !

ମାଧବ ।। ପ୍ରଦ୍ୟୁମ୍ନ ଠିକ୍ ଏଇକଥା ଭାବୁଚି ।

ନିର୍ଲିପ୍ତ ।। ପ୍ରଦ୍ୟୁମ୍ନ ? ପ୍ରଦ୍ୟୁମ୍ନ ଏଇ କଥା ଜାଣେ ? ଆପଣ ତାକୁ ଏ କଥା କହି ଦେଇଛନ୍ତି ?

ମାଧବ ।। ନା, ସେ ମତେ ଏ କଥା କହିଛି. ତମେ ମୋ ଝିଅକୁ ମୂର୍ଖ ବୋଲି ଭାବିଚ ନା କ'ଣ ? ସେ ବିଦେଶ ବୁଲି ଆସିଚି··· ଖାଲି ପାଠ ପଢ଼ିଲାନି ସିନା··· ପଢ଼ିଥିଲେ ତମ ଭଳି I. A. S. ହୋଇଥାନ୍ତା; ବୁଝିଲ ଖୋକା ? After all, ସେ ମୋ ଝିଅ !!

ନିର୍ଲିପ୍ତ ।। ପ୍ରଦ୍ୟୁମ୍ନ ଆପଣଙ୍କୁ କ'ଣ କହିଚି ?

ମାଧବ ।। ତା' ସାଙ୍ଗରେ ଗପିଲା ବେଳେ ତମେ ଆଜକାଲି କୁଆଡ଼େ ଭାରି ଅନ୍ୟମନସ୍କ ରହୁଚ । ତମ ଆଖି ଦି'ଟା ତାକୁ ନ ଦେଖି ଅନ୍ୟଆଡ଼େ ବୁଲୁଚି, ଯେମିତି ତମେ ଚାହିଁ ଚାହିଁ ଗୋଟାଏ କ୍ଲାନ୍ତ ଭୟଙ୍କର ସ୍ୱପ୍ନ ଦେଖୁଚ··· ମାନେ ଏଗୁଡ଼ା ମୋ' ମନଗଢ଼ା କଥା ନୁହେ ନିର୍ଲିପ୍ତ··· I am

quoting ପ୍ରବଧ୍ୱନ ! ସେଇଥିରୁ ମୋ ଝିଅ ଅନୁମାନ କରିନେଇଛି ତମେ ଆଉ କାହାରିକୁ ଭଲ ପାଉଛ ।

କଳିଂପ୍ର ॥ Nonsense ! ଏ ସବୁ speculationର କୌଣସି ମାନେ ହୁଏନା, ଆପଣ କୁହନ୍ତୁ ମଉସା, ବର୍ତ୍ତମାନ କ'ଣ କରିଯିବ ?

ମାଧବ ॥ ଦେଖ, ମୁଁ ଯାହା କରିବା କଥା କରି ଦେଇଛି, ତାଙ୍କ କଲେଜର Managing Secretaryଙ୍କୁ ଖବର ଦେଇଛି । ସେ ଏ ସମ୍ପର୍କରେ ତାକୁ Explanation ପଚାରିବେ । ମୁଁ ଚାହିଁଲେ ତାକୁ ଏଇ କେଶରେ ଆରେଷ୍ଟ କରେଇ ଦେଇ ପାରେ । ଏଇଟା କିଛି ବଡ଼ କଥା ନୁହେଁ । କିନ୍ତୁ ସେ ଝିଅଟା... କ'ଣ ତାର ନାଁ... (ମନେ ପକାଇ) ଶେଳୀ, ଶେଳୀ କାହିଁକି ତମ କଥା କହିଲା ସେଇ ନାଟ୍ୟକାରକୁ ?

କଳିଂପ୍ର ॥ ସେଇଟା ବି ଗୋଟାଏ ଭାବିବା କଥା...

ମାଧବ ॥ ମୁଁ ଭାବୁଛି ଶେଳୀ ତମକୁ Blackmail କରୁଛି । ଏମିତି କିଛି କିଛି କିଛି...

କଳିଂପ୍ର ॥ ଟଙ୍କା ? ମୋ'ଠୁ ଟଙ୍କା ମାରିନେବା ପାଇଁ ଶେଳୀ ଏ 'ଆତ୍ମଲିପି' ଲେଖିଉଛି ? ମୁଁ ବିଶ୍ୱାସ କରିବ ନାହିଁ ।

ମାଧବ ॥ ବାବା କଳିଂପ୍ର ! ତମ ଅପେକ୍ଷା ଆଜି କାଲିର ଝିଅଙ୍କୁ ମୁଁ ବେଶୀ ଜାଣେ, ଏମିତି ବଜାରି ସ୍କୁଲ ଝିଅମାନେ ପ୍ରତିଷ୍ଠିତ ଲୋକଙ୍କୁ ବ୍ଲାକ୍‌ମେଲ କରିବା ପାଇଁ ସବୁବେଳେ ଚେଷ୍ଟା କରି ଆସିଛନ୍ତି... ବର୍ତ୍ତମାନ କହିବା କଥା ହେଲା ତମେ ମୋ ଝିଅ ଏବଂ ଶେଳୀ... ଏ ଦୁହିଁଙ୍କ ଭିତରୁ କାହାକୁ ବାହା ହେବ ଶୀଘ୍ର କ୍ଷିପ୍ରି କରିଦେବା ଉଚିତ୍ ।

କଳିଂପ୍ର ॥ କ'ଣ ଆପଣ କହୁଛନ୍ତି ମଉସା । ପୁଣି ଗୋଟାଏ କଷ୍ଟିଭି... ମାନେ ଆପଣ ମତେ ସ୍ତ୍ରୀ' ଭିତରେ ସନ୍ଦେହ କରିବା ଆରମ୍ଭ କରିଛନ୍ତି ବୋଧହୁଏ... ( ରାଗିଯାଇ ) କେଶ୍ ! ମୁଁ ମଧ୍ୟ ଜଣାଇ ଦେବାକୁ ଚାହେଁ ଯେ ମୋର ମଧ୍ୟ ଗୋଟାଏ

ସମ୍ମାନବୋଧ ଅଛି ଏବଂ ଆପଣଙ୍କର ସନ୍ଦେହ ଘୁଞ୍ଚାଇବାକୁ ମୁଁ ଭଲ ପାଏନା··· This is meanness. !!

ମାଧବ || ( ଠୋ ଠୋ ହୋଇ ହସିଲେ ) ମୁଁ ଜାଣେ··· ତମେ ମୋ' କଥାରେ ଏମିତି ରିଆକ୍‌ସନ୍ ନ ଦେଖେଇ ଥାଉ ଡ଼'ଣ କରନ୍ତ ? କିନ୍ତୁ···

[ ହଠାତ୍ ପଶି ଆସିଛ 'ଶେଲି' ]

ଶେଲି || ଆରେ··· ! ଖୋକା ଭାଇ !! ( ମାଧବ ଦାସଙ୍କୁ ଚାହିଁ ) ନମସ୍କାର । ଆପଣ ବୋଧହୁଏ ଦଲ୍ଲୀର ବଶିଷ୍ଟ ଶିଳ୍ପପତି ଏବଂ ରାଜନୈତିକ ନେତା ମାଧବ ଦାସ ?

ମାଧବ || ତମର ଅନୁମାନ ଠିକ୍ ।

ଶେଲି || ସତରେ ! ମୋର ଆଜ ଅନେକ ସୌଭାଗ୍ୟ !! କେତେବେଳୁ ଆସିଲେଣି ? ଅନେକ ବେଳୁ ନଶ୍ଚୟ ! ଚା ପିଇଲେଣି ନା ନାହିଁ ? ( ବଡ଼ ପାଟିରେ ) ରାମ୍‌ସ୍ୱ ପଦ୍ମଲମାନ୍··· ଭଦ୍ରଲୋକମାନେ ଏ ପର୍ଯ୍ୟନ୍ତ ଚା' ପିଇ ନାହାନ୍ତ ?

[ ଠିକ୍ ଏତକ ବେଳେ ଟ୍ରେରେ ତନ କପ୍ ଚା' ନେଇ ଆସିଲା ରାମସ୍ୱ ]

ରାମସ୍ୱ || ଇଏ ଗୋଟାଏ କଥା ଆଜ୍ଞା ? ବାବୁମାନେ ଘରକୁ ଆସିଛନ୍ତ; ଚା' ନ ପିଇ ଚାଲିଯିବେ ?

ଶେଲି || ନଅନ୍ତୁ; ଚା' ନଅନ୍ତୁ !! ଯାହାହେଉ··· 'ଆମ୍ରପାଳି' ଏଇ ନାଟକ ଲେଖା ନ ହୁଏ କ ମାଧବ ବାବୁ ଆମଭଳି ପଢାଳିମାନଙ୍କ ଘରକୁ ନ ଆସନ୍ତ··· ନାଁ କଣ ଖୋକା ଭାଇ··· ?

ନର୍ଲିପ୍ତ || ତୁ ମତେ ସବୁବେଳେ ଭୁଲ୍ ବୁଝୁଚୁ ଶେଲି ! ମହସା ଆସିଛନ୍ତ ତତେ ସେ ବଷୟରେ ବୁଝେଇ ଦେବେ ।

ମାଧବ || ଆଚ୍ଛା ଶେଲି, କଛି ମନେ କରିବନ; ତମ ପାଖରେ ନର୍ଲିପ୍ତର କଛି ଛଠି··· ମାନେ ପୁରୁଣା ଛଠି···

ଶେଲି ॥ ଚିଠି ? ଖୋକା ଭାଇର ମୋ'ର ଚିଠି ଦିଆ ପ୍ରେମ ହୋଇ ନଥିଲା । ଆମେ ପ୍ରତିଦିନ ସନ୍ଧ୍ୟାରେ ପରସ୍ପରକୁ ମିଶୁଥିଲୁ, ଖୋକା ଭାଇ ଦିନେ ନ ଆସିଲେ ମୁଁ ଅନ୍ୟମନସ୍କ ହୋଇଯାଏ । ସେ ଦିନ ସବୁ ମୋ' ଅଜାଣତରେ, କାହିଁକି କେଜାଣି ଡଉ ଡଉ ଲାଗେ ଏବଂ ଖାଇବା ପାଇଁ ଇଚ୍ଛା ହୁଏନି... ଏବଂ ଖୋକା ଭାଇ କୁହନ୍ତି ସନ୍ଧ୍ୟା ହେଲେ ଗୋଟାଏ କିଛି ଅନିର୍ଦ୍ଦିଷ୍ଟ ଆକର୍ଷଣ ମୋ' ପାଖକୁ ତାଙ୍କୁ ଟାଣି ଆଣେ...

ନିର୍ଲିପ୍ତ ॥ ନା, କେବେ ଚିଠି ଦେଇଚ ବୋଲି ମୋର ମନେ ପଡୁନି ।

ଶେଲି ॥ ତମେ ତମର ପୁରୁଣା ଡାଏରୀ କିମ୍ବା ଟ୍ରଙ୍କ ବାକ୍ସ ଓଲଟେଇବ ତ ଖୋକା ଭାଇ ! ଯଦି କିଛି ଚିଠି ମିଳିଯାଏ, ମତେ ଦେଖେଇବ, ମୁଁ ଟିକିଏ ଦେଖିବି ଆଠ ଦଶ ବର୍ଷ ତଳେ ମୁଁ କେଡ଼େ ବୋକି ଥିଲି । କେତେ ସହଜରେ ପୁଅମାନଙ୍କ କଥା ବିଶ୍ୱାସ କରୁଥିଲି... ମିଛ ମିଛ ସ୍ୱପ୍ନ... ମୁଁ ଗୋଟାଏ ବିରାଟ ଅଭିନେତ୍ରୀ ହେବି... ସମସ୍ତେ ମୋ' ନାଁ ଜାଣିବେ...

ମାଧବ ॥ ନିଶ୍ଚୟ, ନିଶ୍ଚୟ ତମେ ଜଣେ ପ୍ରତିଷ୍ଠିତା ଚିତ୍ରତାରକା ନ ହୋଇଥିଲେ ମୁଁ ଅନ୍ତତଃ ତମ ଘରକୁ ଆସିବା ପାଇଁ କୁଣ୍ଠାବୋଧ କରିଥାନ୍ତି । ତେବେ,... ଶେଲି... ଗୋଟାଏ କଥା...

ଶେଲି ॥ ଆପଣ ବୋଧହୁଏ ଭାବୁଛନ୍ତି ଖୋକା ଭାଇଙ୍କର ଚିଠିପତ୍ର ରଖି ମୁଁ ତାଙ୍କୁ Blackmail କରୁଚି ବୋଲି !! ଓଡ଼ିଶାରେ ଏଇଟା ସମ୍ଭବପର ନୁହେଁ ମାଧବ ବାବୁ । ବରଂ ପୁଅମାନେ ଝିଅଙ୍କର ମିଛମିଛ ଫଟୋଗ୍ରାଫ୍ ତିଆରି କରି, ଡବିଂ କରି ତାଙ୍କ ନାଁରେ ବଦ୍‌ନାମ ଉଠେଇ ବ୍ଲାକମେଲିଂ କରନ୍ତି । କିନ୍ତୁ ନିର୍ଲିପ୍ତ ପଟ୍ଟନାୟକଙ୍କୁ ବ୍ଲାକ୍‌ମେଲ୍ କରିବା ଝିଅ ଓଡ଼ିଶାରେ କାହାନ୍ତି ?

ମାଧବ ॥ ତମେ 'ଆମ୍ଲପି' ନାଟକରେ ଅଭିନୟ କରିବ ?

ଶେଲୀ || ହଁ, ଏଇଟା ମୋ' ପାଇଁ ଏକ ସୁଯୋଗ ।

ମାଧବ || କେବେ stage ହବ··· ?

ଶେଲୀ || ପ୍ରଥମେ ଏକାଡେମୀ ଉତ୍ସବରେ, କୋଉଠି ହବ ଠିକ୍ ନାହିଁ··· ବୋଧହୁଏ ଜୟପୁରରେ ।

ମାଧବ || ତା ହେଲେ ଆମେ ଦେଖିବାର ସୁଯୋଗ ପାଉନୁ ?

ଶେଲୀ || ଆମର ଇଚ୍ଛା ଅଛି, ତା'ପରେ ଆମେ ଏଇଟାକୁ ରବୀନ୍ଦ୍ର ମଣ୍ଡପରେ···

ମାଧବ || କେତେ ଟଙ୍କା ଦେବେ ?

ଶେଲୀ || ଜାଣି କରୁ ନାଉ ନାହିଁ । ହସିଦେ ।

ମାଧବ || କାହାଣୀ ପାଇଁ ଅଲଗା ଟଙ୍କା ଦେବେ ?

ଶେଲୀ || ହଁ ।

ମାଧବ || ହଜାରେ ଦେଢ଼ହଜାର ପାଇପିବ ବୋଧହୁଏ !

ଶେଲୀ || ( ହସିକି ) ପାଗଳ ! ପାଞ୍ଚଶହ ପାଇଲେ ବଡ଼ ଡଥା !

ମାଧବ || ତମେ ଯଦି ନାଟକଟା ନ କର ମୁଁ ଦୁଇହଜାର ଟଙ୍କା ଦେବି ?

ଶେଲୀ || ( ଚମକି ) ମାଧବ ବାବୁ !

ମାଧବ || ଦୁଇହଜାର ଟଙ୍କା !

ଶେଲୀ || ଦୁଇହଜାର ଟଙ୍କା !! ମନ୍ଦ ନୁହେଁତ ଅଫର୍‌ଟା !! କ'ଣ ଖୋକା ଭାଇ ! ତମକୁ ଧନ୍ୟବାଦ ଦେବି ।

ନିର୍ଲିପ୍ତ || ତୁ ତ ମୋ' କଥା ଶୁଣିବା ପାଇଁ ପ୍ରସ୍ତୁତ ନୋହୁ ।

ମାଧବ || ତମେ ଚୁପ୍ ଚୁପ୍ ବସ ନିର୍ଲିପ୍ତ !! ଦେଖ୍ ଶେଲୀ... ଏ ସବୁ ନାଚ, ଗୀତ, ଅଭିନୟର କୌଣସି ଧାର ଧାରେନା ମାଧବ ଦାସ । କିନ୍ତୁ ମୁଁ ଚାହିଁଲେ ଏ ଦେଶର ଅଧିକାଂଶ କଳାକାରଙ୍କୁ କିଣି ପାରିବ । ମୁଁ ଡାକିଲେ କଣ୍ଠଶିଳ୍ପୀ ଆଉ ଅଭିନେତାମାନେ ଦୌଡ଼ି ଆସନ୍ତି... ମୁଁ ଆଜ ତୋ' ଘରକୁ ଆସିଚ ଟିଏ, ଏଇ ଦୁଇହଜାର ଟଙ୍କା ନେଇ···

ଶେଲୀ ॥ ମତେ, ମୋର ସ୍ୱାଧୀନତା, ମୋର କଳା, ମୋର ମନ···
ସବୁ କିଣିନେବେ ? ଏସ୍ପାଚ !

ନିର୍ଲିପ୍ତ ॥ ଶେଲୀ; ତୋର sentimental ହେଇ ମଉସାଙ୍କ ଆଗରେ ଏମିତ କଥାବାର୍ତ୍ତା କରିବାର କୌଣସି ମାନେ ହୁଏନା ! ମଉସା ଗୁହିଁଲେ ତୁ ଦିଲ୍ଲୀ ଯାଇ national award ପାଇ ପାରିବୁ ! ତୋର ଭବିଷ୍ୟତ ଅଛି !

ଶେଲୀ ॥ ମୋ' ଭବିଷ୍ୟତକୁ ଗୋଲି ମାର ଖୋକା ଭାଇ ! ତମ ଭବିଷ୍ୟତ କଥା କୁହ । 'ଆମ୍ରପାଲି' ହେଲେ ହୁଏତ 'ପ୍ରଦ୍ୟୁମ୍ନ' ଦେଖିବାକୁ ଆସିବ··· ଏବଂ ଝିଅମାନେ ଗୁଖି ସନ୍ଦେହ··· ଏବଂ ପ୍ରଦ୍ୟୁମ୍ନ ଜଣେ କଳାକାର ! ସେ ଏକାନ୍ତ ଭାବେ ତମକୁ ଗୁହେଁ··· ଏବଂ···

ମାଧବ ॥ ବେଶ୍ ବେଶ୍ । ସେ କଥା ଠିକ୍ !

ଶେଲୀ ॥ ମୁଁ ଆଶ୍ଚର୍ଯ୍ୟ ହେଲି ଖୋକା ଭାଇ ତାଙ୍କ ପ୍ରେମ କାହାଣୀ ସମ୍ପର୍କରେ ଆପଣଙ୍କୁ କେମିତି କହିଲେ, ମାନେ··· ଆପଣ ବୟୋଜ୍ୟେଷ୍ଠ ଲୋକ ଏବଂ ଖୋକା ଭାଇ ସମାଜରେ ଜଣେ ଆଦର୍ଶ ଉତ୍ତମ ମିଷ୍ଟଭାଷୀ ଯୁବକ... ଯୋଉ ସମାଜରେ ପ୍ରେମ କରିବା ଏକ ଅପରାଧ—ସେଇ ସମାଜରେ ମୋ' କଥା ଆପଣଙ୍କୁ କେମିତି ସେ କହିଲେ···

ମାଧବ ॥ ମୁଁ··· ଦିଲ୍ଲୀରେ ରହେ । ମୋର ସେ ଓଡ଼ିଆ ମାନସିକତା ନାହିଁ । ଆମ ପରିବାରରେ ଅନ୍ତତଃ କାହାର ନାହିଁ··· ଏ କଥା ମୁଁ କହିପାରେ !

ଶେଲୀ ॥ ହେଇପାରେ ଖୋକା ଭାଇ ମୋ' ସମ୍ପର୍କରେ କିଛି ମିଛ ସତ କହିଥିବେ ! ପ୍ରଦ୍ୟୁମ୍ନ ଏ କଥା ଜାଣିନି ?

ନିର୍ଲିପ୍ତ ॥ ପ୍ରଦ୍ୟୁମ୍ନ ଜାଣିଲେ ଏ ବିବାହ ହେଇ ପାରିବ ନାହିଁ ।

ଶେଲୀ ॥ ମାଧବ ବାବୁ, ଆପଣ ଖୋକା ଭାଇଙ୍କୁ ଜୋଇଁ କରିବା ପାଇଁ ରାଜିତ ?

ମାଧବ ॥ ରାଜି ମାନେ···? ସେ ଅଲ୍‌ରେଡ଼ି ମୋର ଜାମାତା ବୋଲି ମୁଁ ଧରି ନେଇଚ ।

ଶେଲା ॥ କ'ଣ ? ମୋ' ଭଲ ଲୋଡ଼ାଏ ବାଳକ ଝିଅ ସାଙ୍ଗରେ ଦିଲୀପ ବାବୁ ଲିପ୍ତ ଥିବା ଜାଣି ଥିଲା ?

ମାଧବ ॥ ( ହସିଦେଲେ ) ବୁଝିଲ ମା'... ଏ ଗୁଡ଼ାକ ସବୁ ନଷ୍ଟକ ଓଡ଼ିଆ ବୁଦ୍ଧି । ଦିଲୀପ, ଓଡ଼ିଶାର ଜଣେ ସୁଦକ୍ଷ ପ୍ରଶାସକଙ୍କ ଅଫିସରେ... ପତ୍ର ପତ୍ରିକାରେ ତାର କବିତା ବାହାରେ... ମଝିରେ ମଝିରେ ସେ ସାହିତ୍ୟ ସଭାରେ ସଭାପତି ମଧ୍ୟ ହୁଏ... କୋଉ ପିଲାବେଳେ କାହା ସାଙ୍ଗରେ ପ୍ରେମ କରିଥିଲ ସେଇଟା ଧରିବା ଆମର କ'ଣ ଦରକାର ?

ଦିଲୀପ ॥ ମଉସା ଭାରି high minded ଲୋକ... କିନ୍ତୁ ପ୍ରଦ୍ୟୁମ୍ନ delicate.

ମାଧବ ॥ ଖୁବ୍ ଏକ୍‌ସେଣ୍ଟ୍ରିକ ଝିଅ... ଯାହା ବୁଝିବ, ତାହା କରିବ... ମିଛ କଥା ଆଦୌ ସହି ପାରେନା...

ଶେଲା ॥ ଦିଲୀପ ବାବୁଙ୍କୁ କେତେ ହଜାର ଯୌତୁକ ଦେବେ ?

ମାଧବ ॥ ଯୌତୁକ ? ଯୌତୁକ କ'ଣ କହ ? ସେଇଟା ଏକ ସାମାଜିକ କଳଙ୍କ ।

ଦିଲୀପ ॥ ଆମେ ନିସ୍ପୃହ ଉଦାର ଭଲ ବାଳା । ଆମେ ଯଦି ଯୌତୁକ ନେବୁ ଶାସନ କରିବୁ କାହାକୁ ?

ଶେଲା ॥ (ହସି ହସି) ଖୁବ୍ ବଢ଼ିଆ, ୟାକୁ ହିଁ କହନ୍ତି ରାଜଯୋଟକ । ଖୋକା ଭାଇ ପ୍ରଦ୍ୟୁମ୍ନକୁ ବାହା ହେବା ପାଇଁ ପାଗଳ; କାରଣ ସେ ଆପଣଙ୍କ ଝିଅ... ବରିଷ୍ଠ ଶିଳ୍ପପତି ପୁଣି ରାଜନୈତିକ ପ୍ରଭାବ ଆପଣଙ୍କର ଅଛି ଏବଂ ଆପଣ ଦେଖୁଛନ୍ତି ବିନା ଯୌତୁକରେ I. A. S. ଜୋଇଁଟିଏ ମିଳୁଛି । ତେଣୁ ପ୍ରଦ୍ୟୁମ୍ନର sentimentକୁ ନ ପଚାର...

ଦିଲୀପ ॥ କାହିଁକି ? ପ୍ରଦ୍ୟୁମ୍ନ ମତେ ଖୁବ୍ ଭଲ ପାଏ ।

ଶେଲା ॥ କ'ଣ ମୋ' ଠାରୁ ଅଧିକ ?

ଦିଲୀପ ॥ ତୋର ମୋର ସମ୍ପର୍କ...

ଶେଲା ॥ ସାତ ବର୍ଷ ତଳେ ଆମେ ଖୁବ୍ ମିଳିଥିଲେ । ବର୍ତ୍ତମାନ ତମେ ଶପଥ କରି କହି ପାରିବ ଖୋକା ଭାଇ ମୁହୂର୍ତ୍ତିକ

ପାଇଁ ମୁଁ ତୁମକୁ ଆକର୍ଷଣ କରେନା ? ଶପଥ କରି କହ- ପାରିବ ସତ କର୍ଜନ ହେଲେ... ନିଦ ନ ଲଗିଲେ... ତମେ, ସେଇ ସାତ ବର୍ଷ ତଳର ବାଣୀବିହାର କଥା ମନେ ପକାଇ ମୋ ସ୍ମୃତିକୁ ରୋମନ୍ଥନ କରୁନା ? କୁହ... ମୋ' ଦେହ ଛୁଇଁ ଶପଥ କରି କହିଲ ଖୋକା ଭାଇ...

ଝଲିପ୍ସ ॥ ମନେ ପଡ଼େ ।

ଶେଲି ॥ ତା' ହେଲେ ? ପ୍ରତିଧ୍ୱନି ସାଙ୍ଗରେ ମୋର କଥାବାର୍ତ୍ତା ହୋଇ ଯାଇଛି, ମୁଁ ତାକୁ ଏ କଥା କହିବ ।

ମାଧବ ॥ ଶେଲି !

ଝଲିପ୍ସ ॥ ଶେଲି !!

ଶେଲି ॥ ହିଁ, ଖୋକା ଭାଇ ! ମୁଁ ପ୍ରତିଧ୍ୱନିକୁ ସବୁ କହି ଦେଉଛି...

ଝଲିପ୍ସ ॥ ସବୁ !! ସବୁ ମାନେ .. ( ନେପ ଚୋଙ୍କ... )

ଶେଲି ॥ ସବୁ... ମାନେ... ତମେ ଗୋଟାଏ ଜଘନ୍ୟ ପଶୁ ବୋଲି... ତାକୁ ଜଣେଇ ଦେଇଛି । ବାଣୀବିହାରରେ ପଢ଼ିଲା ବେଳେ ଡ୍ରିଙ୍କ୍ କରିବାକୁ ପଇସା ନଥିଲା ବୋଲି ମତେ ନେଇ ନିଦ ବଟିକା ଖୁଆଇ କେମିତି ଗାର୍ଲସ ମହିଳା ହୋଷ୍ଟେଲରେ ବ୍ଲାକ୍‌ମେଲିଂ କରିଥିଲ... ବର୍ତ୍ତମାନ ବି ତମେ କେତେ ଦୁଷ୍କରିଜ ଏବଂ Political protec- tion ପାଇବ ଆଉ ଥୋଡ଼ାଏ ଟଙ୍କା ମିଳିଯିବ ବୋଲି ପ୍ରତିଧ୍ୱନି ପଛରେ କେମିତି ଗୋଡ଼େଇଛ... ଫମ୍ପା ସାମାଜିକ ପ୍ରତିଷ୍ଠା ପାଇଁ ତମେ ବିଚରା ନାଟ୍ୟକାରଟାକୁ କେମିତି ଗୁଣ୍ଡା ଲଗେଇ ବାଡ଼େଇଛ ଆଉ ତା' ନାଁରେ ଭିଜିଲାନ୍ସ ଲଗେଇଛ ସବୁ... ସବୁ... ସବୁ...

ଝଲିପ୍ସ ॥ ଶେଲି !! ତୁ ମିଛ କହୁଚୁ ! ମୁଁ ତତେ...

ମାଧବ ॥ କାହାକୁ ଗୁଣ୍ଡା ଲଗେଇ କିଏ ବାଡ଼େଇଲା ?

ଶେଲି ॥ ଆପଣ ପଲ୍ଲୀରେ ରହିବା ଲୋକ, ଏ ଗାଉଁଲି କଥା ବୁଝି ପାରିବେ ନାହିଁ ।

ମାଧବ ।। ନଳିନିପ୍ର ! ତମେ ସେ ନାଟ୍ୟକାରଙ୍କୁ ପିଟେଇଲ ନାହିଁକି ? coward !!

ନଳିନିପ୍ର ।। ମୁଁ କାହିଁକି ସେଇ ନାଟ୍ୟକାରକୁ importance ଦେବାକୁ ଯିବି ସେ ମଉଷା ?

ଶେଳୀ ।। କ'ଣ ହେଲା ? ତମେ ନାଟ୍ୟକାରଙ୍କୁ ମାରନା ? ମୁଁ ବର୍ତ୍ତମାନ ତାଙ୍କୁ visit କରି ଆସୁଚି ବିଷ୍ଣୁ ଆଉ ଟିକିଏ ବ୍ଲୁ ଡ଼ୁଂ ହେଇଥିଲେ ମରିଯାଇଥାନ୍ତା…

ମାଧବ ।। ତମେ ନଳିନିପ୍ର… ଏ ଗ୍ରେଟନେଶ୍ କାଲି କାହିଁକି ?

ନଳିନିପ୍ର ।। ବିଶ୍ୱାସ କରନ୍ତୁ… ମୁଁ… କାଲୁ ସେ ନାଟକରେ ଲେଖକଟା ଭୟଙ୍କର ଅଭଦ୍ର !! ମତେ ବେକ୍ତିଗତ କରି ଗାଳି ଦେଇଚି… ମୋ ନାଁରେ ନାଟକରେ କୁଆଡ଼େ ବାଜେ କଥା ଲେଖିଚି…

ମାଧବ ।। ତା' ବୋଲି ତମେ ତା' ବିରୁଦ୍ଧରେ ତମର କ୍ଷମତା ଓ ବଳ ପ୍ରୟୋଗ କରିବ…

ଶେଳୀ ।। ସବୁ ସେଇ ଇର୍ଷା !! ତମେ ଖୋକା ଖାଇ ଆଶା କରିଥିଲ ସାତ ବର୍ଷ ପରେ ଫେରିଲା ବେଳକୁ ମୁଁ ଆଉ କୌଣସି ପୁଅ ସାଙ୍ଗରେ କଥାବାର୍ତ୍ତା କରୁ ନଥାନ୍ତି… କେବଳ ତମରି ନାଁ ନେଇ ପ୍ରେମର ମାଳ ଜପୁ ଥାଆନ୍ତି…

ନଳିନିପ୍ର ।। ଶେଳୀ ! ତୁ ବେଶୀ ବଡ଼ ବଡ଼ କଥା କହୁଚୁ ।

ଶେଳୀ ।। ତମେ ଗୋଟାଏ କାପୁରୁଷ… ତମେ ନାରୀର ପଣତ କାନରେ ମୁହଁ ଲୁଚେଇବା ଲୋକ… ତମ ପ୍ରିୟତମକୁ ଆଶ୍ରା କରି ଗୋଟାଏ ନାରୀ ଶୋଇ ପାରିବନି… ଏକଥା ପ୍ରିୟଧନ ହୁଏତ ଦାଣ୍ଡ ଘରେ ବସି ଶୁଣୁଛି…

ନଳିନିପ୍ର ।। ଶେଳୀ !!

ମାଧବ ।। What ? ପ୍ରିୟଧନ ଏଇଠିକି ଆସିଚି ।

ଶେଳୀ ।। ହଁ । ବାହାରେ ଠିଆ ହୋଇ ନାଟକର ଏଇ ଦୃଶ୍ୟଟା ଶୁଣୁଥିଲା… ଡ଼ାକି ଦେବି ?

ମାଧବ ।। ପିନ… ପିନ… ( ବାହାରକୁ ଗଲେ .. )

ନଳିନିପ୍ର ।। ଇସ୍ ! ପ୍ରିୟଧନ ଏଇଠିକି ତା' ହେଲେ ଆସିଥିଲା ?

ଶେଲି ।। ଆସିଥିଲା ।

ଜଲିପ୍ର ।। କେମିତି ଆସିଥିଲା ?

ଶେଲି ।। ତମେ ବୋଧହୁଏ ଜାଣିନା, ପ୍ରତିଥିର ନାଟ୍ୟକାରଙ୍କୁ କେତେ ଭଲ ପାଏ... ତାଙ୍କର ପ୍ରତ୍ୟେକ ନାଟକ ସେ ଦେଖେ... କେବେ ତାଙ୍କୁ ବଧାଇ ଜଣାଏ... ଖବର କାଗଜରୁ 'ଅ.ସୁଲପି'ର ବିଜ୍ଞାପନ ଦେଖି ସେ ନାଟ୍ୟକାରଠୁ ସେ ନାଟକର କାହାଣୀ ଶୁଣିଛି । ଆଜି Accident ଖବର ଶୁଣି ହସ୍ପିଟାଲ୍ ଯାଇଥିଲା... ମୋ ସାଙ୍ଗରେ ସେଇଠି ଦେଖା ହେଲା... ମତେ ଗାଡ଼ିରେ ଆଣି ଓ ଏଇଠି ପହଞ୍ଚାଇଦେଲା ।

ଜଲିପ୍ର ।। ତା' ମାନେ ସେ ଆମ କଥାବାର୍ତ୍ତା ସବୁ ଶୁଣି ପାରିଛି ?

ଶେଲି ।। ବୋଧହୁଏ ରେକର୍ଡ଼ର ଅଣି tap କରି ନେଇଚି !!

ଜଲିପ୍ର ।। ଓ !! ( କିଛି ସମୟ ପରେ ) ତା' ପରେ ?

ଶେଲି ।। ହୁଁ ! ଶୋକାଭୂଇ...

ଜଲିପ୍ର ।। ମତେ ଘୃଣା କରୁଚ ?

ଶେଲି ।। ତମକୁ ଘୃଣା ଛଡ଼ା ଆଉ କ'ଣ କରିହାଇପାରେ ?

ମାଧବ ।। ( ପ୍ରବେଶ କରି ) ଆଚ୍ଛା ଜଲିପ୍ର । ମୁଁ ଝିଅ ସାଙ୍ଗରେ ଘରକୁ ଯାଉଚି । ହଠାତ୍ ତାର ମୁଣ୍ଡ ବିନ୍ଧୁଚି ଓ ସେ uneasy feel କରୁଚି...She needs complete rest...... Okay... ! ତା' ହେଲେ ମୁଁ ଆସୁଚି ଜଲିପ୍ର......, ସୁବିଧା ଦେଖି ଘର ଆଡ଼େ ଆସିବ... ! ( ଚାଲିଗଲେ... )

ଜଲିପ୍ର ।। ( ହସିଲା ଖୁବ୍ ଜୋର୍‌ରେ )

ଶେଲି ।। ଖୁବ୍ ଜୋର୍‌ରେ ହସୁଚ ?

ଜଲିପ୍ର ।। ହୁଏତ ପାଗଳ ହୋଇଯିବି ।

ଶେଲି ।। ତମେ ? ପାଗଳ ହବ ? ମୋଟେ ନୁହେଁ... ଖାଲି ଖୋଟାଏ ନାଟକୀୟତା ଆଣିବା ପାଇଁ ହସିଲ ।

ନଳି ପ୍ର ॥ ନିଜ ଭାଗ୍ୟ ଉପରେ ହସିବା ଛଡ଼ା ଆଉ କ'ଣ ଉପାୟ ଅଛି କହିଲୁ ଶେଲୀ । ମାଧବ ଦାସ ଗଲା ମାନେ··· ହାତରୁ ଚନ୍ଦ୍ରମା ମଧ ଖସିଗଲା··· ଆଉ ଭରସା ନାହିଁ··· !!

ଶେଲୀ ॥ ଏମିତି ଦେବତୁଲ୍ୟ ବ୍ୟକ୍ତିଙ୍କୁ ଆଉ ଧୋକା ଦବ ?

ନଳି ପ୍ର ॥ ତମେ ତ ଦେଇଛ ।

ଶେଲୀ ॥ ମତେ ତମେ କ'ଣ ଧୋକା ଦବ ? ବରଂ ମୁଁ...

ନଳି ପ୍ର ॥ ତୁ' ମତେ ଫେରେଇ ଦେଇଚୁ । ମତେ ପ୍ରତ୍ୟାଖ୍ୟାନ କରିଚୁ ।

ଶେଲୀ ॥ ତମ ଭଳି ଦୁର୍ବଳ ଲୋକଙ୍କୁ ସହାନୁଭୂତି ଦେଖେଇ ହୁଏ ।

ନଳି ପ୍ର ॥ ପ୍ଲିଜ !! ସେ ପାଶ୍ରୁ ଲିପିଷ୍ଟା ଚର ଦେ...

ଶେଲୀ ॥ ଖୋଦା ଭାଇ !

ନଳି ପ୍ର ॥ ତଥାପି ମୋ' ଉପରେ ତୋର ରାଗ ଅଛି ଶେଲୀ··· ? ତୁ' କ'ଣ ସତରେ ଭାବୁଁଚୁ ମୁଁ ଗୋଟାଏ ଜନ୍ତୁ କରେ...

ଶେଲୀ ॥ କ'ଣ ?

ନଳି ପ୍ର ॥ ଏ ସହରରେ ତମେ ନାଟକ କରିବ ଆଉ ମୁଁ ଆତ୍ମହତ୍ୟା କରିବି ? ଠିକ୍ ଅଛି··· ମୁଁ ଆତ୍ମହତ୍ୟା କରିବି··· ତମେ ମତେ ତୁ' ତୋର ଘରୁ, ତୋର ଦରଜା ପାଖରୁ ଫେରେଇ ଦେଇ ଥିଲୁ । ଚାଲିଯାଇ ଆଇ. ଏ. ଏସ୍. ପାଇଥିଲି···, ଆଜି ତୋର ଲାଗି ସେ ଚାକିରି ଦିବ··· ସାମାଜିକ ପ୍ରତିଷ୍ଠା ଦିବ ଅଉ ସମ୍ମାନ ଦିବ··· ମୁଁ ଆତ୍ମହତ୍ୟା କରିବି··· Okay··· ଶେଲୀ··· ଖୁସିରେ ରହ ·· ମୁଁ ଆଉ କେବେ ତତେ ଦରଶନ କରିବା ପାଇଁ ଆସିବ ନାହିଁ ।

( ତା' ଆଖି ଛଳ ଛଳ ହୋଇ ଆସିଲା ଓ ସେ ଚାଲିଯିବାକୁ ବସିଲା )

ଶେଲୀ ॥ ଖୋଦା ଭାଇ ।

ନଳି ପ୍ର ॥ ( ଅଟକି ଯାଇ ) କ'ଣ ? ଆଉ କିଛି କହିବାର ଅଛି ? କିଛି ଶେଷ ଗାଳି··· ? ଦେଇ ଯା'··· !!

ଶେଲୀ || ଝୋକା ଭାଇ ! ସତ୍ତରେ ତମେ··· ( କଣ୍ଠ ତା'ର ଭାଙ୍ଗି ପଡ଼ିଲା··· )

ଫିଲିପ୍ସ || ଠିକ୍ ଅଛୁ··· ତୁ' ତୋର ଯାହା ଇଚ୍ଛା କର । ମୋ' ପାଇଁ ଭାବିବା ଦରକାର ନାହିଁ···!!

ଶେଲୀ || ନା··· ନା··· ଝୋକା ଭାଇ··· ତମେ ଯେତେ ଅହଂକାର କେଉ ପୁରୁଷ ଭଳି ଠିଆ ହେବ ସେଠିକ ମୁଁ ଖୁସି ହେବି··· ନା··· ତମେ ଏମିତି ଭାଙ୍ଗି ପଡ଼ନା··· ପ୍ଲିଜ୍ !! ଠିକ୍ ଗୋଟାଏ ପୁରୁଷ ହୁଅ । ପଥର ଭଳି କଠିନ··· 'ଆମ୍ଳଲିପି' ତମର ଆଗରେ ମୁଁ ପୋଡ଼ି ଦେଉଛି··· ଦରକାର ନାହିଁ ସେଇ କାଗଜର... ( ଦୌଡ଼ି ଯାଇଛି, ଭିତରୁ ଆଣିଛି ପାଣ୍ଡୁଲିପିଟା··· ) ବର୍ତ୍ତମାନ ଜାଳି ଦେଉଛି··· ( ତା'-ପରେ ପାଣ୍ଡୁଲିପିଟାକୁ ଟେବୁଲ ଉପରେ ଜଳୁଥିବା ମହମ-ବତୀରେ ଜାଳି ଦେଉଛି )

ଫିଲିପ୍ସ || ( ଖୁସି ହେଉଛି, ଅଥଚ ନିଜକୁ ପ୍ରକାଶ ନ କରି ) ମତେ ଖୁସି କରିବା ପାଇଁ ତୁ' ସ୍ୱାର୍ଥ ତ୍ୟାଗ କଲୁ··· ଏତେ ଗୁଡ଼ାଏ ଟଙ୍କାର ମୋହକୁ ଏମିତି ଜାଳି ଦେଲୁ... ଏ କଥା ମୁଁ ତତେ ଅନୁରୋଧ କରିବି ନାହିଁ ନୋ'—ନେଭର୍, ମୁଁ ତୋର ମଙ୍ଗଳ ଚାହେଁ... ସବୁବେଳେ ତୋ'ର ମଙ୍ଗଳ ଚାହେଁ··· ( ଚାଲିଗଲା ବାହାରକୁ )

( ପଥର ଭଳି ବସିଛି । ଯେମିତି କିଛୁ ଶୁଣି ପାରୁନ.. କିଛୁ ଜାଣି ପାରୁନ... !! ନିଆଁରେ ଗୋଟି ଗୋଟି ହୋଇ ପୋଡ଼ି ଯାଉଛି 'ଅମ୍ଳଲିପି'ର ପୃଷ୍ଠା ଗୁଡ଼ିକ, ସମ୍ପୂର୍ଣ୍ଣ ଅନ୍ଧାର .. କେବଳ ସେଇ ନିଆଁରେ ଉଦ୍ଭୂତ 'ଶେଲୀ'ର ମୁହଁ... )

ଶେଲୀ || ମୁଁ ତମ ହିଂସ୍ରଜନ୍ତୁ ମାନଙ୍କର ସ୍ମୃତିକୁ ଏମିତି ଜାଳି ଦେଇ ଦିବ... ତା' ସାଙ୍ଗରେ ଜଳି ଯାଉ ମୋର ସମସ୍ତ ଅତୀତ... ସମସ୍ତ ସ୍ମୃତି··· କାହିଁକି ସାଇତି ରଖିଥିବି ? ତମେମାନେ ସବୁବେଳେ ସବୁ ମୁହୂର୍ତ୍ତରେ ମୋ' ଦେହଟାକୁ ହିଁ ଚାହିଁଛ...

ଏ ଚମଡ଼ା ଭିତରେ··· ଏ ଦେହ ଭିତରେ କୋଉଠି ମୋର ବି ଗୋଟାଏ ମନ ଅଛି··· ତା' କଥାତ କେହି ବୁଝିଲେ ନାହିଁ··· !! ମୁଁ ଖାଲି ସମସ୍ତଙ୍କର ମନ ଜଗି ଚାଲିଥିବି·········· ଅଭିନୟ କରୁଥିବି ?? ଜୀବନସାରା ଅଭିନୟ··· ଘରେ, ବାହାରେ, ଭିତରେ··· ସବୁଠି... ନା··· ଆଉ ନୁହେଁ·

( ହଠାତ୍ ବାହାରୁ ପଶି ଆସିଛନ୍ତି ନାଟ୍ୟକାର । ମୁଣ୍ଡରେ ପଟି··· ଆସି ଶେଲୀକୁ ଦେଖି ଅଟକି ଯାଇଛନ୍ତି···)

ନାଟ୍ୟକାର ।। ଶେଲୀ !

ଶେଲୀ ।। ( କେବଳ ସ୍ମିତ )

ନାଟ୍ୟକାର ।। କ'ଣ ହେଉଛି ?

ଶେଲୀ ।। ( ହସିଛି, ପାଗଳାଙ୍କ ଭଳି )

ନାଟ୍ୟକାର ।। ଶେଲୀ !! ( ହଠାତ୍ ଦୌଡ଼ି ଯାଇ ପାଣ୍ଡୁଲିପିର କାଗଜ ଗୁଡ଼ାକ ଗୋଟେଇ ଆଣିଛି··· ) What !! ମୋର 'ଆତ୍ମଲିପି' କୁ ପୋଡ଼ିଦେଲ ତମେ··· ?

ଶେଲୀ ।। ( ସେମିତି ସ୍ୱପ୍ନାବିଷ୍ଟ ଭଳି ) ସବୁ ସ୍ମୃତି, ସବୁ ଜ୍ୱାଳା, ସବୁ ଅପମାନ ପାଉଁଶ ହେଇଗଲାଣି ଆଉ କିଛି ନାହିଁ... ନାଟ୍ୟକାର ! ମୁଁ ସବୁ ଜାଳି ଦେଇଛି !

ନାଟ୍ୟକାର ।। ( ଉତ୍ତେଜିତ ହୋଇ ) କାହିଁକି ? ତମର କି ଅଧିକାର ଅଛି ମୋ' 'ଆତ୍ମଲିପି'କୁ ଜାଳି ଦେବାର ?

ଶେଲୀ ।। ସେ କାହାଣୀ ମୋର—

ନାଟ୍ୟକାର ।। ସେ କାହାଣୀ ମୋର । ମୁଁ ସେ ନିର୍ଲିପ୍ତ ପଟ୍ଟନାୟକକୁ ବେଢ଼େଇ ଖାଇବି ସେଇ ନାଟକରେ·

ଶେଲୀ ।। ନିର୍ଲିପ୍ତ ପଟ୍ଟନାୟକକୁ ଘୃଣା କରିବାର କିଛି ନାହିଁ ନାଟ୍ୟକାର । ନିର୍ଲିପ୍ତର ବ୍ୟକ୍ତିତ୍ୱ ନାହିଁ... ସେ ଗୋଟାଏ ଅଣପୁରୁଷ···

ନାଟ୍ୟକାର ।। ତାର ଫର୍ଣ୍ଣଟାଣି ପାଇଁ ତାକୁ ବ୍ୟଙ୍ଗ କରାଯାଇ ଧାଡ଼େ କିନ୍ତୁ, ମୁଁ ବୁଝି ପାରୁନ ଶେଳୀ··· ( ଉତ୍ତେଜିତ )

ଶେଳୀ ।। ମୁଁ ସେମିତି ଧ୍ୱଂସାତ୍ମକ ବ୍ୟଙ୍ଗରେ ବିଶ୍ୱାସ କରେ ନାହିଁ ।

ନାଟ୍ୟକାର ।। ମୋର ଅନୁପସ୍ଥିତିରେ ସେ ପାଣ୍ଡୁଲିପି ପୋଡ଼ି ଦେଇ ତମେ ଅନ୍ୟାୟ କରିଚ । ବିଶ୍ୱାସଘାତକତା କରିଚ !!

ଶେଳୀ ।। ଠିକ୍ କରିଚି !! ତମେ ଜାଣ ନାଟ୍ୟକାର ? ଏ ପର୍ଯ୍ୟନ୍ତ ମୋର ବିଶ୍ୱାସ··· ମଣିଷ ସମ୍ପୂର୍ଣ୍ଣ ପଶୁ ଅବସ୍ଥାକୁ ଆସିନ । ଅନ୍ୟକୁ ଘୃଣା ଓ ହିଂସା ଦେଖେଇଲେ, ଅନ୍ୟର ଗୋଡ଼ ଟାଣି ତାକୁ ବେଙ୍କିତ କଲେ ମଣିଷ ପଶୁ ସ୍ତରକୁ ଚାଲିଯାଏ । ତେଣୁ ତମର ସମ୍ଭାଳିବା ଉଚିତ୍ । ଖାଲି ଉଦ୍ୟୁକ୍ତ ହେଇ କିଛି ମିଳିବନି । କେବଳ ଝଟେ ନଜର ଶତ୍ରୁର ଅପଚସ୍ତ ଜଣବ··· ତନ୍ତୁ ଗୁଡ଼ିକ ଛିନ୍ନ ହେବେ···

ନାଟ୍ୟକାର ।। ସହନଶୀଳତା !! ତମେ ସହ୍ୟ ସାଉଚ ବୋଲି ତମ ଉପରେ ଅନ୍ୟମାନେ ଅତ୍ୟାଚାର କରୁଛନ୍ତି··· ପୃଥିବୀରେ ଲୋକେ ସବୁ କଥା ସହି ଆସିଛନ୍ତି ବୋଲି ଏ ପର୍ଯ୍ୟନ୍ତ ଅନ୍ୟାୟ ଓ ପଶୁତ୍ୱ ରାଜତ୍ୱ କରି ଆସିଚି··· ଓଃ !! ଭଗବାନ୍ ! ବର୍ଷ ବର୍ଷ ଧରି ଏ ମଣିଷମାନେ ଖାଲି ସହୁଥିବେ ଓ ଚାଲେ ଏମାନଙ୍କର ଉପରେ··· ମୁଁ ତମ ସହନଶୀଳତାକୁ ଘୃଣା କରେ··· ତମକୁ ମଧ୍ୟ !!

ଶେଳୀ ।। ତମେ ଦିନେ ମତେ ଭଲ ପାଉଥିଲ···। ମୁଁ ଜାଣେ ନାଟ୍ୟକାର... ଭଲ ପାଇବା ଯୋଉଠି... ଘୃଣା ମଧ୍ୟ ତା' ପାଖେ ପାଖେ ଥାଏ । କିନ୍ତୁ ମୁଁ ବିପ୍ଳବ କରି ପାରିବି ନାହିଁ··· ସମ୍ଭବ ମୋର ବ୍ୟକ୍ତିତ୍ୱ··· ମୁଁ ସର୍ବଂସହା... ଅନ୍ୟ ନାରୀମାନେ କେବଳ ଧରିବନ୍ଧା ଗୋଟିଏ ସ୍ୱାମୀର ଅତ୍ୟାଚାରକୁ ସହ୍ୟ କରନ୍ତି । ମତେ ଏମିତି ତମ ଭଳି ଅସଂଖ୍ୟ ପୁରୁଷଙ୍କର ଅତ୍ୟାଚାର ସହିବାକୁ ହେବ··· ଯୋଉ ପର୍ଯ୍ୟନ୍ତ ମୁଁ ଅଭିନୟ କରୁଥିବି··· ସେ ପର୍ଯ୍ୟନ୍ତ ଏ ଯନ୍ତ୍ରଣାରୁ ମୁକ୍ତି ନାହିଁ··· ।

ନାଟ୍ୟକାର ॥ ଦେଖ୍, ମୁଁ ଯାଉଚ, ତମେ ମୁକ୍ତ ଯାଅ ।

(ନାଟ୍ୟକାରର ଏଇ ବକ୍ତବ୍ୟ ସାଥିରେ ମଞ୍ଚ ଉପରେ ଏକ କରୁଣ ଗମ୍ଭୀର ଭାବ ଜମି ଆସିଲା ବର୍ଷଣମୁଖୀ ଆକାଶର ମେଘ ଭଳି । ଶେଲି ବିଶ୍ୱାସ କରିପାରୁ ନଥିଲା: ସତରେ ନାଟ୍ୟକାର ଚାଲିଯିବେ ବୋଲି । କ୍ରମଶଃ ସେଇ ସ୍ତବ୍ଧତାର କାଠିନ୍ୟ ଭିତରୁ ଝରି ଆସିଲା ଟୋପାଏ ଲୁହ ଭିଜା ଆବଦ୍ଧ ସଙ୍ଗୀତ...

"ଶେଷ ଅଙ୍କର ଶେଷେ ଯବନିକା
ଯେବେ ପଡ଼ିଯିବ ଚାଲି ଯିବ ଏକା
ମତେ ଭୁଲିଯିବ ମୋର ନାୟିକା..."

ସେଇ ଗୀତର କଥା ଉପରେ ସବୁ ଅଭିମାନ ଓ କୋହକୁ ଲଦି ଦେଇ ଶେଲି ପଚାରିଲା :)

ଶେଲି ॥ ଯିବ ? ସତରେ ଚାଲିଯିବ ?

ନାଟ୍ୟକାର ॥ ରହିବା କ'ଣ ଦରକାର ? ତମେ ଯେ ମୋ 'ଆତ୍ମଲିପି'କୁ ଜାଳି ଦେଇଚ ।

(ମଞ୍ଚର ସମସ୍ତ ଆଲୁଅ ଆସି ଏକାଠି ଠୁଳ ହୋଇ ପଡ଼ିଲା ନାଟ୍ୟକାରର ମୁହଁରେ । ଶେଲି ପାଖରେ ଛାଡ଼ିଦେଇ ଯାଉଥିବା ସ୍ମୃତିର ପୃଥିବୀ ପାଇଁ ମୋହ ଓ ତା ସଙ୍ଗେ ସଙ୍ଗେ ବିଦାୟ ପାଇଁ ପ୍ରସ୍ତୁତି ଭିତରେ ମୁହଁ ଉପରେ ଫୁଟି ଉଠୁଥିବା କାଠିନ୍ୟ ଏକାଠି ପ୍ରକାଶିତ ହେଲା । ସାମାନ୍ୟ ଦ୍ୱନ୍ଦ୍ୱ । ଆଲୋକରେ ବିବର୍ଣ୍ଣ ରଙ୍ଗରେ ଘୂରି ବୁଲୁଥିବା ଏକ ବୁଢ଼ିଆଣୀ ଜାଲର ତନ୍ତୁ ଗୁଡ଼ିକ ଯେମିତି କଟିଗଲା...ନାଟ୍ୟକାର ଚାଲିଗଲେ ଓ ଏକ ଝରା ଗଙ୍ଗଶିଉଳୀ ପରି ତଳେ ଲୋଟି ପଡ଼ିଲା ଶେଲି । ସାମନାରେ ତା'ର ମୁକୁଳା ବାଳ ଗୁଡ଼ିକ ତାକୁ ଘେରିଇ ରଖିଲା ଅନ୍ଧକାରର ବଳୟ ପରି ।

ଏବଂ ମଞ୍ଚ ଭିତରୁ ତା'ର ଭିତରେ ଶୁଭୁଥିଲା
ଗୀତର କ୍ରମସ୍ୱର :

'ହେଲେ ସେଇ ହେବ ମୋର ଜନ୍ମଟୀକା
ଯଦି ଜଣେ ବି ତ ଦେଖନ୍ତୁ ଦର୍ଶକ
ମତେ ସାଉଣ୍ଟି ରଖିବ ମନେ ତାର ଦେଇ
ମମତାର ଟିକେ ମହକ ।"

"ଏଇ ଜୀବନଟା ଏକ ନାଟକ"ର ପୁନରାବୃତ୍ତି ବେଳେ ଲୁହଝରା ଆଖି ନେଇ ଶେଖା ଉପରକୁ ମୁଣ୍ଡ ଉଠାଇଲା । ଅନ୍ଧାର ଭଳି କଠିନତା )

ତିଶୋଳ ॥ ( ଛଳ ଛଳ ଆଖି… ବାଷ୍ପାକୁଳ କଣ୍ଠ ) ନାଟ୍ୟକାର !! ତମେ ସତରେ ଚାଲି ଯାଉଚ… ମୁଁ ଏଇଂକ୍ଷଣି ବି ଚେଷ୍ଟା କଲେ ତମକୁ ଅଟକେଇ ରଖି ପାରନ୍ତି… ତମର ଏକାକୀ ଜୀବନକୁ ସରସ ସୁନ୍ଦର କରି ପାରନ୍ତି… କିନ୍ତୁ… ନା…! ତମେ ଯାଅ… ମୁଁ ଚିରଦିନ, ଏମିତି, ଏକେଲା, ସ୍ମୃତିର ନାଆଁରେ 'ଆତ୍ମଲିପି'ର କାଗଜ ଭଳି ଜଳୁଥିବି ।

[ କ୍ରମଶଃ ତୀବ୍ର ଆଲୋକର କୁଣ୍ଡଳୀ ଶେଖାର ମୁହଁ ଉପରେ ତୀବ୍ରତର ହୋଇ ପଡ଼ିଲା ଲିଭି ଯାଉଥିବା ପ୍ରଦୀପର ଶିଖା ପରି । ତା'ପରେ ଅନ୍ଧାର ]

ସ୍ୱସ୍ତି
ତା ୨୮ - ୪ - ୭୬

